ପ୍ରକୃତି-ବର୍ଣ୍ଣନା

# ଚନ୍ଦ୍ରଭାଗା ସ୍ୱୟମ୍ବର କାବ୍ୟ

ଓ

# କୋଣାର୍କ ମହିମା

ପ୍ରଣେତା

ଆଧ୍ୟାତ୍ମିକ ପଣ୍ଡିତ କବି ଶ୍ରୀ କୀର୍ତ୍ତିନବହାରୀ ଆଚାର୍ଯ୍ୟ

ପ୍ରକୃତି-ବର୍ଣ୍ଣନା

# ଚନ୍ଦ୍ରଭାଗା ସ୍ୱୟମ୍ବର କାବ୍ୟ

ଓ

# କୋଣାର୍କ ମହିମା


ଲେଖକ ଓ ପ୍ରକାଶକ

ଆଧ୍ୟାତ୍ମିକ ପଣ୍ଡିତ କବି ଶ୍ରୀ କୀର୍ତ୍ତନବିହାରୀ ଆଚାର୍ଯ୍ୟ

ବାଗଡ଼ିଆ,

କଟକ



ପ୍ରଥମ ମୁଦ୍ରଣ—୧୦୦୦

୧୯୭୫


ମୂଲ୍ୟ—୪ ୧-୨୫

# ଅଭିମତ

'ନନ୍ଦ' ଅଗ୍ରଜେ ଅଜ୍ଞ ତବ ବରଣତ,
ଚନ୍ଦ୍ରଭାଗା ପଢ଼ି ହୋଇଲି ମୋହିତ । ୧ ।
ପ୍ରକୃତି ବର୍ଣ୍ଣନା ସୁରୁଚିମୟ,
ମୋହିବ ନିଶ୍ଚୟ ପାଠକ ହୃଦୟ । ୨ ।
ଚନ୍ଦ୍ରଭାଗା କାବ୍ୟ ଚରିନ ଶରଣି,
ପଢ଼ି ତୋଷ ହେବେ ବୁଧ ବିଚକ୍ଷଣ । ୩ ।
ପ୍ରଥମ ଉଦ୍ୟମ ହେଲେହେଁ ତୁମ୍ଭର,
ହୋଇଛି ରଚନାଶୈଳୀ ମନୋହର । ୪ ।
କାଳକ୍ରମେ ସ୍ଫୁରୁ ଅଳଙ୍କାର ଧରି,
ମାନସ ମୋହିବ କବିତା ସୁନ୍ଦରୀ । ୫ ।
ଅନାବିଲ ଭାବଧାରା ବିକଶିବ,
ଲବ୍ଧ ବର୍ଣ୍ଣ ବ୍ରଜ ମାନସ ମୋହିବ । ୬ ।
ସର୍ବଶକ୍ତିମୟୀ କରନ୍ତୁ କରୁଣା,
ଏ'ପଥରୁ ତବ ମତି ନୋହୁ ଊଣା । ୭ ।

ତା ୫-୨-୭୫

ଗୁଣମୁଗ୍ଧଃ
**ଶ୍ରୀ ମାଧବଚନ୍ଦ୍ର ମିଶ୍ରଶର୍ମ୍ମା**
କଇଁଥି ଶାସନ

ଶ୍ରୀ ଶ୍ରୀ ହିଙ୍ଗୁଳା ମାତାଙ୍କ ସଙ୍କର ମହା ଉତ୍ସବରେ ଶ୍ରୀ ସତ୍ୟନାରାୟଣଙ୍କ ନାମ କୀର୍ତ୍ତନ ଉପଲକ୍ଷେ ଯୋଗଦେଇ କବି ଶ୍ରୀ କୀର୍ତ୍ତି ବିହାରୀ ଅର୍ଜୁନଙ୍କର ଅଧୁନିକ ଯୁଗଧର୍ମ ଗୀତା ଓ ପ୍ରକୃତ ବର୍ଣ୍ଣନା ଚନ୍ଦ୍ରଭାଗା ସ୍ୱୟମ୍ବର କାବ୍ୟଟି ପାଠକରି ଖୁସି ହେଲି । କବି ତାଙ୍କର ଲିଖଣୀରେ ପ୍ରତ୍ୟେକ ଋତୁ ବର୍ଣ୍ଣନା, ଅଧୁନିକ ଯୁଗରେ ନାନାଦି ସ୍ୱର ଯୋଜନା ଦେଇ କବିତା-ସୁନ୍ଦରୀକୁ ସଜାଇ, ଶେଷ ସର୍ଗରେ ଚନ୍ଦ୍ରଭାଗା ସ୍ୱୟମ୍ବର ବର୍ଣ୍ଣନା କରିଛନ୍ତି । ଏହାହିଁ ପ୍ରତ୍ୟେକ ସାହିତ୍ୟସେବୀ କଳାକାରଙ୍କର ସାହାଯ୍ୟ କରିପାରିବ । ଏଣୁ ବିଶେଷତଃ ପାଲାକାରଙ୍କର ଉପଯୋଗୀ ହୋଇଥିବା ଯୋଗୁ ଏହା ପାଠକରି ଈଶ୍ୱରଙ୍କୁ ପ୍ରାର୍ଥନା କରେ କି ଏହିପରି କବିମାନଙ୍କ ଲିଖଣୀ କାବ୍ୟ କବିତା, ସମସ୍ତ ଜନ ମଙ୍ଗଳ କାମନାକରୁ ଏବଂ କବିଙ୍କର ଜୀବନ ଏହି ସାହିତ୍ୟ ଉଦ୍ୟାନର ନବ କିଶଳୟ ପୁଷ୍ପରୂପେ ସୁଶୋଭିତ ହୋଇ ଉତ୍କଳ ଜନନୀର ପଦ ପୁଷ୍ପାଭରଣ ହେଉ । ଇତି ।

ଗାୟକ ଶିରୋମଣି
**ଶ୍ରୀ ନିରଞ୍ଜନ କର**
ତା ୨୧ । ୫ । ୭୨

---

କବି ଶ୍ରୀ କୀର୍ତ୍ତନ ବିହାରୀ ଅଗ୍ରୱାଲଙ୍କର ପ୍ରକୃତି ବର୍ଣ୍ଣନା ଚନ୍ଦ୍ରଭାଗା କାବ୍ୟଟି ଅତି ସୁଲଳିତ ଏବଂ ସରଳ ସାହିତ୍ୟରେ ପରିପୂର୍ଣ୍ଣ ଅଟେ । କାବ୍ୟଟି ଆଦ୍ୟ ପ୍ରାନ୍ତ ପଢ଼ିଲେ ଜଣାଯାଏ ପ୍ରିୟତର ବସନ୍ତାଦି ଋତୁମାନଙ୍କର ଗୁଣ ବର୍ଣ୍ଣନାରେ ଉପମା ଓ ରୂପକାଦି ଅଳଙ୍କାରଗୁଡ଼ିକ ଯଥାସ୍ଥାନରେ ଥିବା ଅତି ଆନନ୍ଦର କଥା । ଏଣୁ ଅଧୁନିକ ଲେଖା ହେଲେହେଁ ପଣ୍ଡିତମାନଙ୍କର ଆଦରଣୀୟ, ଯୋଗ୍ୟ କବିଙ୍କର ମନୋଗତ ଭାବ ପ୍ରକୃତି ବର୍ଣ୍ଣନାର ପ୍ରକୃତ ସ୍ଥାନରେ ଫୁଟାଇଥିବାରୁ ମୁଁ ତାଙ୍କୁ ବିଶେଷ ପ୍ରଶଂସା କରେ ଏବଂ ଭବିଷ୍ୟତରେ କବିଙ୍କର ଲେଖା ଉନ୍ନତ ହେବ ବୋଲି ଆଶା କରେ । ଇତି ।

ଦାମୋଦରପୁର
ତା ୨୫ । ୭ । ୭୨

ଶ୍ରୀ ବୈଷ୍ଣବଚରଣ ପ୍ରଧାନ
ଗାୟକଚନ୍ଦ୍ର



ଗ୍ରନ୍ଥପ୍ରଣେତା

**ଶ୍ରୀ କୀର୍ତ୍ତନବହାରୀ ଆଚାର୍ଯ୍ୟ**

ଓଁ ଶ୍ରୀ ଶ୍ରୀ ଗଣେଶାୟ ନମଃ

# ପ୍ରକୃତି ବର୍ଣ୍ଣନା

# ଚନ୍ଦ୍ରଭାଗା ସ୍ୱୟମ୍ବର

ବସ୍ତୁ ନିର୍ଦ୍ଦେଶାତ୍ମକ ମଙ୍ଗଳାଚରଣ ।

—:o:—

(ରାଗ—ବଙ୍ଗଳାଶ୍ରୀ)

ଜୟ ମା ଶାରଳା ପଦ କର ଖେଳା
ମମ କଣ୍ଠେ ତଟେ ବସି,
ପ୍ରକୃତ ବର୍ଣ୍ଣନା କବିର କଳ୍ପନା
ଲେଖିବେ ଅଛି ମନାସି । ୧ ।
ସେ ମୁଷ୍ଟି ତୁ ଦଅ ହୋଇଣ ସଦୟ
ଧରିଣ ମୁହିଁ ଲେଖନୀ,
ରାଗ ରାଗିଣୀରେ ବିବିଧାଳଙ୍କାରେ
ମଣ୍ଡିବି ପ୍ରକୃତି ରାଣୀ । ୨ ।
ଥିଲେ କାଳିଦାସ ଅଜ୍ଞାନ୍ଧ ବାଳୀଶ
ତବ କୃପାରେ ବିଭୂଷ,
ତୋ ପଦ ଧ୍ୟାୟିଣ ରଚି ରାମାୟଣ
ବିଖ୍ୟାତ ତୁଳସିଦାସ । ୩ ।

ଦାସ ଜଗନ୍ନାଥ　　　　ରଚି ଭାଗବତ
　　ମୋହିଲେ ଭକ୍ତଙ୍କ ମନ,
ଦୀନ କୃଷ୍ଣ ଆଦି　　　　ଦେବ କବି ଚୟ
　　ଗ୍ରନ୍ଥ ରଚିଲେ ଯେସନ । ୪ ।
ଅଧମ କୀର୍ତ୍ତନ　　　　ନାହିଁ ଭକ୍ତି ଜ୍ଞାନ
　　ବରଦାୟୀ ବୀଣାପାଣି
ବିରାଟ ସାଗର　　　　ଲଙ୍ଘିବାର ମୋର
　　ଆଶା ତୋ କୃପା ତରଣୀ । ୫ ।
ତବ କୃପା ବାରି　　　　ହୃଦେ ମୋର ଭରି
　　ଦାନ କଲେ ଅକାତରେ,
ପ୍ରକୃତ ବର୍ଣ୍ଣନା　　　　କାବ୍ୟ ଚନ୍ଦ୍ରଭାଗା-
　　ସ୍ୱୟମ୍ବର ସଂଯତରେ । ୬ ।
ଭବିବ ଖରବ　　　　ସମୁଜ ସାହିତ୍ୟ
　　ପ୍ରକୃତ୍ତ ଗୁଣୀଙ୍କ ଅଙ୍ଗ,
ତୁଅ ମା' ହୃଦୟ　　　　ହେଉ ଜାତିନାଦୟ
　　ନ ହେଉ ପ୍ରେମ ଲଷଂଭଙ୍ଗ । ୭ ।

---

## ପଞ୍ଚ ଦେବତାଙ୍କ ବନ୍ଦନା

(ରାଗ—କାମୋଦୀ)

ନାରାୟଣ ଅଭୟ, ଚରଣକୁ ଆଶ୍ରୟ, କରନ୍ତି ଆତ୍ମ ଭକ୍ତଚୟ,
ନମସ୍କାର କର ଭୟ, କାଳେ ହେବ ନିର୍ଦ୍ଦୟ,
　　　　ନିଜଠରେ କରୁଣା ଥାଉ ମୋର ହେ ।
ନାରାୟଣ, ନାହିଁ ଆନ ଭୁବନ ଏୟ, ନମିତ ମତି ଦେ ଚାହିଁ କଲେ ଲୟ ।
ତୁମ୍ଭେ ତ ଭକ୍ତପ୍ରିୟ, ମୁହିଁ କାହିଁ ଅପ୍ରିୟ, କରୁଣାକର ଦୟାମୟ ହେ ।୧।

ଗିରିରାଜ ନନ୍ଦନୀ, ସାରା ବିଶ୍ୱବନ୍ଦନୀ, ସୁତ ତବ ନାମ ଗଣେଶ ।
କେତେ କେତେ ବାଳୀଶ, କରଅଛ ବିଦୁଷ,
ବନ୍ଦେ ବିଘ୍ନେ ତବ ଯଶ ହେ
ଗଜାନନ, ଫିଟାଅ ମୋ ଜ୍ଞାନ ନୟନ, ଅଜ୍ଞାନ ମୂଢ଼ ଅକିଞ୍ଚନ ।
ଦିଅନ୍ତୁ ସଦଜ୍ଞାନ, ଦମ୍ଭ ଦର୍ପାଭିମାନ,
କ୍ଷଣିକରେ ହୋଇଯାଉ ଚୂର୍ଣ୍ଣ ହେ ।୨।

ଜୟହେ ଉମାପତି, ବର୍ଷ କରଛ ରତି, ଶ୍ରବଣେ ସ୍ତମ୍ଭୀଭୂତ ମତି
କରୁଅ ମୁହିଁ ଅତି, ଜଣାଣ ନତିପ୍ରତି,
ବାରେକ ହୋଇ ଶାନ୍ତ ମୂର୍ତ୍ତି ହେ
ପଶୁପତି, ପ୍ରେତାଧିପତି ଉଗ୍ରମୂର୍ତ୍ତି, ଫେଡ଼ିବାରେ ମୋ ଦୁର୍ଗତି ।
ପ୍ରଣାମ ନତିପ୍ରତି, ଦୁର୍ଗତିକୁ ଝଟିତି,
କୁଠାରେ କାଟ ଶିବାପତି ହେ ।୩।

ଚଣ୍ଡ ମୁଣ୍ଡ ମାଳିନୀ, ଦୁରିତ ନିବାରିଣୀ, ଚୈାପ ନିବାସିନୀ ଅମ୍ବିକା ।
ଚର୍ଚ୍ଚିକାଇ ମୃଡ଼ାନୀ, ଗୋ ମହିଷାମର୍ଦ୍ଦିନୀ,
କୃଷ୍ଣ ପ୍ରାଣପ୍ରିୟା ରାଧିକା ଗୋ ।
ଯାଜ୍ଞସେନୀ, ଥରେ ବାରେକ ମୋ ଦର୍ଶନୀ, ସକଳ ବିଘ୍ନ ବିନାଶିନୀ ।
ଧର୍ମ ଅର୍ଥ ଦାୟିନୀ, କଳି ଅଘନାଶିନୀ,
ଶ୍ରେଷ୍ଠ ବୈରଧାରିଣୀ ଗୋ ।୪।

ଜୟହେ ଦିବାକର, ତମିର ନାଶକର; ତେଜ ତବ ଅଟେ ପ୍ରଖର ।
ଦୁରିତ କ୍ଷୟକର; ହେ ଛାୟା ସଙ୍ଗ ବର କର ମୋ ପ୍ରତି ପ୍ରତିକାର ହେ;
ଦିବାକର, ଏକ ଚକ୍ର ରଥ ତୁମ୍ଭର, ଯୋକ୍ତ ସପତ ବାଜିବର ।
ଶୂନ୍ୟେ ତବ ବିହାର, ଅଟେ ପୂଜା ଗ୍ରହର;
ନମାମି ପ୍ରିୟ ନମସ୍କାର ହେ ।୫।

# ପ୍ରକୃତି ବର୍ଣ୍ଣନା

## ପ୍ରଥମ ସର୍ଗ

(ରାଗ—ବଙ୍ଗଳାଶ୍ରୀ)

ଜୟ ମା' ଧରଣୀ ଧନ୍ୟ ତୋ ଉତ୍ପତ୍ତି
ହୋଇ, ହେଲ ମୂର୍ତ୍ତିମତି;
ବିଧି ସର୍ଜନାରେ ବିଶ୍ୱ ବ୍ରହ୍ମାଣ୍ଡରେ
ତୋ' ପରେ ସୃଷ୍ଟିର ସ୍ଥିତି । ୧ ।

ତୋ ଶୋଭା ବର୍ଦ୍ଧନ ଚତୁର ଆନନ
ପାଇଁ ରଚି ନାନା ଜୀବ,
ବାସର ସପତ ପକ୍ଷ, ମାସଯୁକ୍ତ
ଅୟନ ବତ୍ସର ଯୁଗ । ୨ ।

ଷଡ଼ଋତୁ ସହ ନକ୍ଷତ୍ର ସମୂହ
ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ ଆଦି,
ପୌଣ୍ଡ୍ରାଦି ଇକ୍ଷୁ ମାଣିକ୍ୟାଦି ହୀରା
କାନ୍ତି ବର୍ଦ୍ଧନେ ସମ୍ପାଦି । ୩ ।

ପୀତାଦି ଲୋହିତ ବରଣ ସହିତ
ବିବିଧ ତୋ ଅବୟବ,
ଜଣାଯାଏ ସବୁ କନ୍ଦର ଶିଖରୀ
ସ୍ରୋତ ସଲିଳାଦି ହ୍ରଦ । ୪ ।

ପ୍ରସ୍ତର ବାଲୁକା ଅଣୀ ମୃତ୍ତିକା
କାହିଁ ଆନ୍ତ୍ରଦ୍ରବ୍ୟ ପୂର୍ଣ୍ଣ,
ଲୌହାଦ ସୁବର୍ଣ୍ଣ ହୀରା ରେଶ୍ମ
ଭରନ୍ତୁ ମାତଃ ଧରଣୀ । ୫ ।
ଜନ୍ମଦନ୍ତୁ ଧାତା ନାମ, ଅଦମାତା
ହେମ-ଗର୍ଭା ବସୁନ୍ଧରା,
ଦୂ୍ୟତର ଗୌରବ ସବାରେ ମାନବ
ଆଦ ପ୍ରାଣୀ ଭଅଇଲ । ୬ ।
ଅଙ୍ଗେ ମାଳ ମାଳ ଶୁଭ୍ର ସୌଧ ମାଳ
ରଚିବେ ସେ ସ୍ଥାନେ ସ୍ଥାନ
କାହିଁ ବା ଧୃଜଙ୍ଗ ପ୍ରାଚୀର ସୁଦୀର୍ଘ
କାହିଁ ବା ମୁକ୍ତ ଉଦ୍ୟାନ । ୭ ।
ପିପିଲ୍ଲିକା ସ୍ତୂପ କାହିଁ ବା ବଲ୍ମୀକ
କାହିଁ ଅଳଗର୍ଦ୍ଦ ବିଲ,
କାହିଁ ଓହିକୁଳ ଶୋଭିତ ତୋ କୋଳ
କରନ୍ତି ଗୁହା ନିର୍ଝର । ୮ ।
ଇନ୍ଦୁର ନକୁଳ କାହିଁ କୋକବିଲ
ତଟିନୀ ତୀର ପଠାରେ,
କୋଟି ଚକ୍ଷୁ ଦେଖ ତୁହି ଗୋ ଜନନୀ
। ସୁଷମା ନିରେଖ ବାଟରେ । ୯ ।
ବରଞ୍ଚ ନନ୍ଦନୀ ଟୋ ପ୍ରକୃତ ରାଣୀ
ଲଲଟେ ତୋ ଶତ ଉବ,
ସହସ୍ରାଂଶୁ କଟେ ସେ ମଣ୍ଡିତକାରେ
ଜଡ଼ାଏ ମୁକୁତା ହିରା । ୧୦ ।

ଗଙ୍ଗା ତୁଙ୍ଗଭଦ୍ରା ଲଗ    ଯମୁନା କାବେରୀ
  ବିବିଧ ରତନ ମାଳିକା
କାନ୍ତି ... ଅବଳ    କାନ୍ତି ବା ନିର୍ମଳ
  ବିରାଜିତ ... ଚଳେ । ୧୧ ।
ନଗ ହିମାଳୟ    ଉଚ୍ଚ ପୁଷ୍ପ ପ୍ରାୟ
  ଅଟଇ ସୁଦୀର୍ଘ ନାଶା
ବେନି ଗିରି କାଣ (ଉଦୟାସ୍ତାଚଳ) ଛିଡା ବେନି ଶ୍ରବଣ
  ବୈଦୁର୍ଯ୍ୟ ରତନ ମିଣା । ୧୨ ।
ରଚିତ ମକର—    କୁଣ୍ଡଳ ଉଜ୍ଜ୍ୱଳ
  କଲ୍ୟ ବାଳାର୍କ କିରଣେ
ନାସିକା ସୁଦୀର୍ଘ    ତୁଷାର ସଂଯୋଗ
  ମଧ୍ୟାହ୍ନ ଭାନୁ କିରଣେ । ୧୩ ।
ସ୍ଫଟିକ ବର୍ଣ୍ଣେ    ବିରାଜୁଛି ପୁଣି
  କି ବର୍ଣ୍ଣିବ ସେ ସୁଷମା,
ଉପମା ତୁଳନା    ନୋହିବେ କେ ବାମା
  ତୋତେ ତୁ ସମାନ ସିନା । ୧୪ ।
ସଲିଳ ଶଯ୍ୟାରେ    ସଦା ସୁପ୍ତକାଳେ
  କି ଅବା ଜାଗ୍ରତାବସ୍ଥା,
ସତ୍ୱ ତୋ ସକାଶେ    ନିର୍ମିଣିଛି କି, ଏଥ
  କୋମଳ ତୁଳିକା ସଂସ୍ଥା । ୧୫ ।
ତୋ' ପରେ ସସୀମ    ଗଗନ ଅସୀମ
  ନୀଳବର୍ଣ୍ଣ ଚନ୍ଦ୍ରାତପ,
ଦିବା ଅବସାନେ    ନିଶା ଆଗମନେ
  ଶୋଭା ତାରକାଖଚିତ । ୧୬ ।

ଗ୍ରୀଷ୍ମ ଋତୁରେ ଶୁଷ୍କ ସରୋବର
ନଦୀ ନାଳରେ ଅଳ୍ପ ଜଳ,
ଚୂର୍ଣ୍ଣ ଧୂଳିରେ ଧୂଳି ଧୂସର
ବର୍ଷାରେ ନଦୀ ଏ ବାଢ଼ି ଆସେ । ୧୭ ।
ବୃକ୍ଷ, ଲତା, ଗୁଳ୍ମ ଇତ୍ୟାଦି ତୃଣ
ଆବୃତ ହୋଇଛନ୍ତି ହିମ,
ଶୀତଳ ଋତୁରେ ଅଙ୍ଗ ଆବୃତରେ
ବିବିଧ ଶୀତ ବସନ । ୧୮ ।
ବରଷା ଋତୁରେ ସବୁଜ ଶାଢ଼ୀରେ
କୃଷକର କୃଷିକ୍ଷେତ୍ର,
ନବ ଦୂର୍ବାଦଳ କୋମଳ ଶ୍ୟାମଳ
ବାସ ଦଶେ ସୁଶୋଭିତ । ୧୯ ।
କୃଷି କ୍ଷେତ୍ର ପ୍ରାନ୍ତେ ସନ୍ଧ୍ୟସଥ ଅନ୍ତେ
ମକାଦ କାଙ୍କୁ ପାଚିଲା,
ସାଠିଆଦ ଧାନ ପାଚି ପୀତବର୍ଣ୍ଣ
ଧରିତ୍ରୀ ପ୍ରାଏ ଶୋଭିଲା । ୨୦ ।
ଶରତ ଋତୁର ରବ୍ୟାଦ ଫସଲ
ଛବି କେଡ଼େ ପରିପାଟି,
ବାଣ୍ଟି ବିଧାନକ ଧନ୍ୟ ସେ କୃଷକ
ସଜାଇଛି ପ୍ରକୃତି କ । ୨୧ ।
ଶିଶିର ଋତୁର ପାଚି ଶସ୍ୟକ୍ଷେତ୍ର
ପରିଏ ଦଶେ ସୁବର୍ଣ୍ଣ,
ପ୍ରଭାତ ସମୟ ଶିଶିର ସମୂହ
"ପୀତାମ୍ବର ପରିଧାନ । ୨୨ ।

ଖଣ୍ଡିତ ହୀରକ ଜର୍ଜେଟ ନାମକ
କଲ୍ୟ ବାଳାର୍କ କିରଣେ,
ଶ୍ୱେତ, ପୀତ ପୁଷ୍ପ ସୌରଭ ସୁବାସ
ବିରାଜେ ପୁଷ୍ପ ଉଦ୍ୟାନେ" । ୨୩ ।

ହେମନ୍ତ ଋତୁର ବାଇଗଣୀ ବସ୍ତ୍ର
ଚଣା, ଗହମ ଫସଲ,
ଗୋଲକ୍ଷ ଓଲ୍‌କୋବି ବାର୍ତ୍ତାକ୍ୟାଦ କୋବି
ପ୍ରଭୃତିରେ ଝଲମଲ । ୨୪ ।

ନବ ଦୂର୍ବାଦଳେ ସ୍ୱର୍ଣ୍ଣନାଭ କୁଳ
ରଚିଥାନ୍ତି ଚକ୍ରଜାଲ,
ସୁନୀଳ ବସନେ ବିଶନ ବରନେ
ଶୋଭିଛନ୍ତି କି ଶିଳ୍ପୀକର । ୨୫ ।

ବସନ୍ତ ଆଗମେ ସହକାର ବନେ
ବକୁଳ ମାଳେ ଶୋଭିଲା,
ପୁଂସ୍କୋକିଳ କଳ ଗାନ ମଧୁକର
ଗୁଞ୍ଜନ ମନ ମୋହିଲା । ୨୬ ।

ପାଳଧୂଆ କରି ଗାବଦ ମନ୍ଦାର
ଲୋହିତ ବରଣ ଧରେ,
ପଲ୍ଲବିତ ଚୂତ ଜାମୁର ସହିତ
ତଥି ସହିତରେ ମିଶେ । ୨୭ ।

ମଲ୍ଲୀ, କୁନ୍ଦବଲ୍ଲୀ ଚମ୍ପକ ଶେଫାଳୀ
ବକୁଳ ମାଧବୀ ପୁଞ୍ଜ;
ନାନାଜାତି ପୁଷ୍ପ ବିତର ସୁବାସ
ହର୍ଷିତ ମନ ଭ୍ରମରଙ୍କ । ୨୮ ।

ମଳୟ ସୁଗନ୍ଧ ଲଭିଣ ଅନନ୍ଦ
ଭ୍ରମର ଭ୍ରମରୀ କୁଳ,
ମଦ ବିହ୍ୱଳରେ ମଦୁଅ ଭ୍ରମରେ
ପ୍ରେମେ ହୋଇଣ ବହ୍ୱଳ । ୨୯ ।

ଏ ପୁଷ୍ପୁ ସେ ପୁଷ୍ପେ ମଧୁ ଅଶେ ବସେ
ଉପେକ୍ଷିଣ ଲଜ୍ଜାକୁଳ,
ପ୍ରକୃତ ପ୍ରକୃତ ସୁବାସ ଲୋଭିତ
ବାସ ପିଣ୍ଡ କି ବାହାର ? ୩୦ ।

ପଦ୍ମିନୀ ବସନେ ଯେଉଁ ଭୃଙ୍ଗମାନେ
କୋଲାହଳେ ଚୁମ୍ବିଦ୍ୟନ୍ତି,
ତେସନେ ଲୋଭିତ ପୁଷ୍ପ ସୁଶୋଭିତ
ଅଳିକୁଳ କି ଚୁମ୍ବନ୍ତି ? ୩୧ ।

କମେ ମଧୁ ଶେଷେ ନିଦାଘ ଯେ ଅସେ
ସରୋରୁହ ସରୋବରେ,
ଅସ୍ଫୁଟ କଳିକା କେତେ ବା ପୁଷ୍ପିକା
ହୋଇ ସୁବାସ ବାଢରେ । ୩୨ ।

କାହିଁ ହ୍ରଦ ଜଳେ ଚକ୍ରବାକ ଖେଳେ
କାହିଁ ବା ମରାଳ ପନ୍ତି,
କାହିଁ ନଦୀ କୂଳେ ବକ ଅଦ ମେଳେ
କୋଳାହଳେ ରବ ଦ୍ୟନ୍ତି । ୩୩ ।

ଏ ସୌରଭମାନ ଦେଖିଣ ସୁଜ୍ଞାନ
ମନରେ ହୁଏ ବିସ୍ମିତ,
ଯେଉଁ ଜଗତର ସୌରଭ ବିସ୍ତାର
ସଙ୍କାଶେ ବିଧି ନିର୍ମିତ । ୩୪ ।

ଘେନା ସଙ୍କୁ  ମନ୍ତ୍ରଣୀ ଦ୍ୱୈତ ଦେଶ
ଏଯୁ ଭାରତରେ ଆକ୍ରାନ୍ତ
ବିପ୍ଳବ ଅଚଳ  ଶୁଦ୍ର ଭୂମଣ୍ଡଳ
ହୋ ଖଣ୍ଡେ ଭିନ୍ନ ଖଣ୍ଡ ।୩୫।
ଭୂସ୍ୱର୍ଗ ଭାରତ  ବାଲଭାଦ୍ର ମର୍ତ୍ତ୍ୟ
ଅଟେ ମରୁକ୍ଷା ରସାତଳ,
ଏ ଭୁବନେ ବାସ  ରାଜସ ତାମସ
ସତ୍ୟାଦ ଜନ୍ ସକଳ ।୩୬।
ଗୁଣରେ ଜଡ଼ିତ  ଧର୍ମାନୁମୋଦିତ
ଅଟେ କାଳ କ୍ରିୟା କର୍ମ,
ନାକ ଲୋକବାସୀ  କ୍ରୋଧ ହିଂସା ନାଶି
ଅହିଂସା ତାଙ୍କର ଧର୍ମ ।୩୭।
ମଲେ ସେ ମରିବେ  ଧର୍ମ ନ ଛାଡ଼ିବେ
ସତ୍ୟ ଶୌର୍ଯ୍ୟାଦରେ ଗତା,
ଯୁଗେ ଯୁଗେ ଈଶ  ପାଇଁ ଅବତଂଶ
ଭାରତ ଭୂମିଟି ଲୋଡ଼ା ।୩୮।
ତେଣୁ ଜଗଦୀଶ  ସଦା ଅବତଂଶ
ଭାରତ ପୁଣ୍ୟ ଭୂମିରେ,
ଲକ୍ଷ୍ମଣ ଶ୍ରୀରାମ  କୃଷ୍ଣ ବଳରାମ
ଅବତୀର୍ଣ୍ଣ ପୁରାଣରେ ।୩୯।
ବୁଦ୍ଧ ଗଉତମ  ଯୀଶୁ ଚଇତନ
ବର୍ଣ୍ଣାମିବାଦ ଜନକ,
ପାଣ୍ଡବ କୌରବ  ମନୁ ଋଷି ସବ
ପଞ୍ଚସଖା ଯାଜ୍ଞବଲ୍କ୍ୟ ।୪୦।

ନାହାନ୍ତି ଏମାନେ    ରହିଛନ୍ତି ପୁରାଣେ
ଏମାନଙ୍କ ସଦ୍‌ଗୁଣେ
ସେତୁବନ୍ଧ ଲଙ୍କା    ଅଯୋଧ୍ୟା ଦ୍ୱାରକା
ବାରୁଣୀବନ୍ଦାଦି ସ୍ଥାନ । ୪୧ ।
ଏହି ପୁଣ୍ୟଦେଶେ    ବାପୁଜୀ ଆମ୍ଭର
ହୋଇଥିଲେ ଅବତୀର୍ଣ୍ଣ,
ନର କଳେବରେ    ଅହିଂସା ମନ୍ତ୍ରରେ
କଲେ ବିଶ୍ୱଶାନ୍ତି ପୂର୍ଣ୍ଣ । ୪୨ ।
ସେହି ମହାତ୍ମାଙ୍କେ    ଦେଶ ବିଦେଶରେ
ପୂଜୁଛନ୍ତି ଜାତି ଭକ୍ତ,
ଶିଷ୍ୟ ତାହାଙ୍କର    ପଣ୍ଡିତ ଜବାହର
ମନ୍ତ୍ରକିନା ତ୍ରିଭୁବନ । ୪୩ ।
ବିଶ୍ୱ ବ୍ରହ୍ମାଣ୍ଡରେ    ଭକତ ଗହଳରେ
କରନ୍ତି ତାହାଙ୍କ ପୂଜା,
ସେ ମହାମାନବ    ତୋ ବକ୍ଷେ ତିରଙ୍ଗା
ଉଡ଼ାଏ ଶାନ୍ତିର ଧ୍ୱଜା । ୪୪ ।

## ଦ୍ୱିତୀୟ ସର୍ଗ

(ରାଗ—ରାମକେରୀ)

ମର୍ତ୍ତ୍ୟବାସୀ ରୁଷ୍ଟ, ବଳାତ, ନିଜ ନିଜ ମଧ୍ୟରେ ।
ଜଳ୍ପ ବିତଣ୍ଡାରେ ମାତଣି, ଜର୍ଜ୍ଜରିତ ଈର୍ଷାରେ । ୧ ।
ସ୍ୱର୍ଗ ଆକ୍ରମଣେ ସର୍ବଦା, ସର୍ବେ ବଳାନ୍ତ ମତି ।
ମର୍ତ୍ତ୍ୟ ଲୋକ ହୋଇ ବିଦବେ କାହୁଁ ଲଭିବେ ଖ୍ୟାତି ? ୨ ।
ପାତାଳ ସହିତ ବିବାଦ, ବଳଶାଳୀ ନ୍ୟୁୟର୍କେ ।
ଧନବଳେ ଧନୀ ଜିଣିବା ଆଶା କରନ୍ତି ଥୋକେ । ୩ ।
ରସାତଳ ବାସୀ ଧନାଢ୍ୟେ କେବେ ଇଚ୍ଛନ୍ତି ମର୍ତ୍ତ୍ୟ-
ବାସୀଙ୍କୁ ଜିତଣି ଧନରେ ବଢ଼ାଇବେ ମହତ୍ତ୍ୱ । ୪ ।
ନାଗ ଲୋକବାସୀ ଭାରତ ପର ଧନ ଲୋଭରେ ।
ଲୋଭ ହୋଇ ଲଭିବାକୁ ସେ ନ ଭୁଲନ୍ତି ଈର୍ଷାରେ । ୫ ।
ସ୍ୱଳ୍ପ ଧନ ଜୀବନ ଚଳନ୍ତି, ସଦା ହୋଇଣି ସୁଖି ।
ସତ୍ୟ, ନ୍ୟାୟ, ଧର୍ମ, ପ୍ରତିଷ୍ଠା, ନ ପାରନ୍ତି ଉପେକ୍ଷି । ୬ ।
ସର୍ବ ଲୀଳା ତବ ଏ ଖର୍ବ, ଅଟୁ ତୁ ସର୍ବଂସହା ।
ଜଗତେ ଜୀବେ ସ୍ତନ୍ୟ ଧାରୀ ମା' ଅଟେ ସର୍ବ ତୋ ମାୟା । ୭ ।
ତୋ ବକ୍ଷ ବିଦାରିଣ କୃଷକେ ହନ୍ତା, ଶସ୍ୟ ସକାଶେ ।
ଶିଳ୍ପପତିମାନେ ସର୍ବଦା ତୋତେ ଖୋଳନ୍ତି ରୋଷେ । ୮ ।
ସ୍ୱକାର୍ଯ୍ୟ ହାସଲ କରନ୍ତି ଅଟେଁ ଭକ୍ତି ଲକ୍ଷଣ ।
ସକଳ ସନ୍ତାନେ ମାତଃ ତୋ ସଦା କୃପା ଅର୍ପଣ । ୯ ।
ଖେଚର ଭୂଚର ଯେ ସର୍ବ ବାସ କରନ୍ତି ଜଳେ ।
ସ୍ତନ୍ୟପାୟୀ ଶିଶୁ ପରିଏ, ମାତୃ ସ୍ନେହେ ତୋ କୋଳେ । ୧୦ ।

ବ୍ୟାଘ୍ରେ କମ୍ପା ସର୍ପେ [illegible] ଏତୋ କୁତୁକ-
ବଳରେ ଦର୍ଶାଉ ପ୍ରାଣୀଙ୍କୁ, ଭତ୍‌ବ ଦେଖେ ଦଶକ । ୧୧ ।
ନର୍ତ୍ତକୀ ଯେସନେ 'ବିଶ୍ୱଜିଟରେ' ଖେଳିଲେ କ୍ରୀଡ଼ା ନବାବ ।
ଦର୍ଶଚ୍ଛେ ଦର୍ଶୀଏ ନାଗର, ବଡ଼ମାର ଗୁରୁସୀ । ୧୨ ।

ବିବିଧାଲଙ୍କାରେ ଭୂଷଣ, ପିନ୍ଧି ସୁଚୀନ ବାସ ।
ନବୀନା ଯୁବତୀ କଦା ଏ, ଶୁକ୍ଳ ତଥି ଷୋଡ଼ଷ । ୧୩ ।
କେବେ ରମ୍ଭା କେବେ ଉର୍ବଶୀ, ଇନ୍ଦ୍ର ପଞ୍ଚମହିଷୀ ।
ରମା, ଉମା, କେବେ ସାବିତ୍ରୀ, କେବେ ପ୍ରଭୁଙ୍କର ଦାସୀ । ୧୪ ।

ଇବଜୀର୍ଣ୍ଣ ଶୀର୍ଣ୍ଣ ଭୂଷଣେ, ପିନ୍ଧି ଖାଙ୍କରବେଣୀ ।
ତପସ୍ୱିନୀ ବେଶ ସାଜଣ, ତପେ ସେ ଛଦ୍ମବେଶୀ ? ୧୫ ।
ନୃତ୍ୟ ଭାବଭଙ୍ଗୀ ଦର୍ଶାଏ, ଛାୟା ରଙ୍ଗମଞ୍ଚରେ ।
ମନ, ମୀନ ବୁଡ଼ ରହେ କ ସଦା ଅବଳ ନୀରେ ? ୧୬ ।
ଭାବୁକ, ଦର୍ଶକବୃନ୍ଦ ସେ ଭାବ, ସତ୍ୟ ମଣନ୍ତି ।
ରଙ୍ଗମଞ୍ଚେ ବସି ନାଗରେ, କ୍ରୀଡ଼ା ରଙ୍ଗ ଦେଖନ୍ତି । ୧୭ ।
ତେଣୁକେ ତବ ରୂପ ଦର୍ଶନେ; ଜନେ ମୋହ ହୁଅନ୍ତି ।
ଜଡ଼ରୂପୀ ବିଶ୍ୱବାସୀଏ ହୃଦେ ମୋଦ ଲଭନ୍ତି । ୧୮ ।

---

## ତୃତୀୟ ସର୍ଗ

## [ବସନ୍ତ ବର୍ଣ୍ଣନା]

(ରାଗ—ରସକୁଲ୍ୟା)

ଶୀତ ଶେଷେ ଋତୁ ରାଜ ବସନ୍ତ ।
ପ୍ରବେଶେ ତୁଷାର କ୍ରମେ ନିହତ ।
ପର୍ଣ୍ଣ ହୀନ ତରୁ ପୂର୍ଣ୍ଣ ପଲ୍ଲବେ,
ମୋଦେ ବନପ୍ରିୟ ପଞ୍ଚମ ରାବେ ।
ସହଚରୀ ବୃନ୍ଦ ଘେନି ଯେ,
ମଧୁପ ଝଙ୍କାରୀ ବୀଣା ବାଜୁଛନ୍ତି ବିଜୟ ପ୍ରକୃତ ରାଣୀ ଯେ । ୧ ।

ହଲଧୀ ବସନ୍ତ ବେଗଲ୍ଭ ବାଏ
କୁମ୍ଭାଟ ଅଂ ରଙ୍ଗେ ଶଙ୍ଖ ବଜାଏ,
କୁକ୍କୁଟ ବଜାଏ ବୀର କାହାଳୀ
ଉଷା ଭ୍ରମଣରେ ବିଜୟ ବାଳୀ ଯେ,
ସଙ୍ଗେ ଚତୁରଙ୍ଗ ବଳ-ଚୟ
ପୁଷ୍ପ ଧନୁ ସହ ପଞ୍ଚଶରେ ଘେନି ମାର କା ରଚଣି ବାହାର ଯେ ? ୨ ।

କୁନ୍ଦ କୁରୁବକ ମଧୁମାଳତୀ
ପଟୁଆର ପଂକ୍ତି ଯୋଗ ଦିଅନ୍ତି,
ମଲ୍ଲୀ ଚନ୍ଦ୍ର ଯବ ବନ ମଲ୍ଲିକା
ରସାଳ ମୁକୁଳ ଧରନ୍ତି ପତାକା ଯେ,
ମୃଦୁମଳୟ ସମୀର ଯେ
ମଞ୍ଜୁଳେ ମଧୁରେ ସୁବାସ ବିତରି ବହେ ଅଳସ ଘୁମର ଯେ । ୩ ।

ପ୍ରାଚୀ ଦିଗେ ନବ ଦର୍ଶନ ଉଜ୍ଜ୍ୱଳ
ଉଦୟରେ ପ୍ରଭବୀ ତାମସୀ ହତ,
ଅଗ୍ରେ ବାସନ୍ତ ଦେଇଣ ବଜାଏ
ବାଦ୍ୟନାଦେ ଶତ ପୁଷ୍ପ ପଳାଏ ଯେ,
ବାହପୀ କୁଞ୍ଜ ଶେଯରୁ ଉଠ
ରଙ୍ଗବୋଳା ଅବିର ପିଚକାରି ପୂର୍ଣ୍ଣ କରିଲୁଁ ନ ଦୁହେଁ ଯେ । ୪ ।

ଯୋଗୀ ଋଷି ସର ହ୍ରଦେ ଲକ୍ଷଣଲେ ।
ଷୋଡ଼ଶୀଯେ ଦୃଷ୍ଟି ଦଣ୍ଡ ଲଭିଲେ
ତହୁଁ କ୍ରୀଡ଼ା ପାଇଣ ପୂର କର
ରଙ୍ଗ ଲୁଣ୍ଠିଦେଲେ ପଲ୍ଲବ ପର ଯେ,
ଥୋକେ ଫିଙ୍ଗି ସର ହ୍ରଦେ ଯେ
ଜଳ ମଧ୍ୟେ ରଙ୍ଗ ମିଶ୍ରିତ ନ ହୋଇ ହୋଇଛନ୍ତି କି କୋକନଦ ଯେ ? ୫ ।

ଥୋକେ ସ୍ଫଟିକ କାଂଶ୍ୟକେ ପଡ଼ିଲା
ଥୋକେ ଉଦ୍ୟାନ ମନ୍ଦାରେ ରହିଲା,
ପାଳଧୂଅ ବୃକ୍ଷେ ପଡ଼ିଣ କିଛି
ତହୁଁ ପୁଷ୍ପ ରକ୍ତ ବର୍ଣ୍ଣ ହୋଇଛି ଯେ,
ସୁବାସ ବିହୀନ ହୋଇ ଯେ
ଦେବ ଯୋଗ୍ୟ କେବେ ହୋଇ ନ ପାରିବି
ରହିଲେ କି କ୍ରୀଡ଼ା ପାଇ ଯେ ? ୬ ।

ତବ ଆଗମନେ ହୋଇ ଉପସ୍ଥିତ
ମଧୁ ବୃଷ୍ଟି ପୁଷ୍ପ ବୃଷ୍ଟି ସତତ (ମହୁଲ ଗଛରୁ)
ଜୋ ବହୁବର୍ଷ ଥିବା ଶୁଭଶାଖା
ସେ ପୁଷ୍ପ ଉପଶଙ୍କା ଯେ,

ହେଉଛନ୍ତି ନଗରବାସୀ ଜନେ-ସେ
ଗୌର ଭକ୍ତ ଅଟେ ଅବାଳବନିତା ହୃଷ୍ଟ
ମିଷ୍ଟାନ୍ନ ଭୋଜନେ ସେ ।୭।

ଯେସନେ ଗୁଣ୍ଡିଚ୍ଚା ଯାତ ପୁରୀରେ
ଦର୍ଶନ ସକାଶେ ସୁଭକ୍ତ ନରେ,
ବର୍ଣ୍ଣ ବୈଷମ୍ୟ କିଛିହେଁ ନ ଥାଏ
ମୁକ୍ତ ଆଶାରେ ଧାବନ୍ତି ସର୍ବେ ଯେ,
ବଡ଼ଦାଣ୍ଡେ ହୋଇ ଜମା ସେ
ନୀଳାଚଳବାସୀ ସଂହନେ ବିଜୟ,
ଶୋଭିଦେଖି ଜନେ ଲୋଭା ସେ ।୮।

କୃଷ୍ଣ ଶେଷେ କୃଷ୍ଣ ଲଭେ କୋଟର
କୃଷ୍ଣ ତେଜ ଗୋପାଙ୍ଗନା ବାହାର,
କୃଷ୍ଣ ସ୍ନାନ ସଙ୍ଗେ ନାଡ଼େ କଳିଲା
କୃଷ୍ଣ କରେ କୃଷ୍ଣ ପଡ଼େ ଜଳ୍ଳୁଳା ଯେ,
କୃଷ୍ଣ କୃଷ୍ଣ ଯୋଗୀ ଭଜ ସେ
କୃଷ୍ଣେ ସ୍ନାନ ସାର ତୋ' ପଦସରୋଜେ
ଧ୍ୟାନେ ଥାନ୍ତି କି ନମନ୍ତି ସେ ? ୯ ।

ତୋ ଭେଟ ସକାଶେ ଜନ ବନ୍ଧୁଳ
ସମବେତ ବଇତରଣୀ କୂଳ,
ଯାଜ ନଗ୍ର ବର୍ହ୍ମା ବରୋଜା ମଧ୍ୟେ
ଜଳେ ସ୍ନାନ ସାର ମନ ଅହ୍ଲାଦେ ଯେ,
ପୂଜା ସମ୍ଭାରକୁ ଘେନି ସେ
କିଷ୍ୱପଠ ହୃଦେ ପୂଜୁଥିଲେ ତୋତେ,
ତୀର୍ଥ ହୋଇଛି ବାରୁଣୀ ସେ ।୧୦।

---

# ଚତୁର୍ଥ ସର୍ଗ

## ଗ୍ରୀଷ୍ମ – ବର୍ଣ୍ଣନା

(ରାଗ—ଚୌଖି)

ବସନ୍ତ ଅନ୍ତେ ନିଦାଘ,          ପ୍ରବେଶ କି ହିଂସ୍ର ବ୍ୟାଘ୍ର
ପ୍ରଚଣ୍ଡ ରବି କିରଣେ ଧରା ତାତିଲା,
ନବ ପଲ୍ଲବ ଜୀବନ          କ୍ଷୀଣ ହେଲା ଦିନୁ ଦିନ
ଅନବରତ ଶରୀରୁ ସ୍ୱେଦ ଝରିଲା ।
ପଶୁପକ୍ଷୀକୁଳ ତୃଷାରେ
ଅସ୍ଥିର ହୋଇ ପଡ଼ିଲେ ବ୍ୟାଧ କବଳେ ।୧।

ଅରଣ୍ୟେ ଗଣ୍ଡା ଗୟଳ          ଭ୍ରମି ନ ପାଇଣ ଜଳ
ଅଶ୍ରାକଲେ ତରୁ ତଳ ହୋଇ ଆକୁଳ
କାହିଁ ବା ହରିଣଯୂଥ          ଦାବାନଳରେ ପୀଡ଼ିତ
ଅପାଦ୍ମେମ ସ୍ତମ୍ଭୀଭୂତ ହୋଇ କାତର
କାହିଁ ସରେ ଅବଳ ନୀରେ
ଧୀବର ଜାଲୁ ଭୟରୁ ହଂସ ମଗରେ ।୨।

ଲଭିଣ କାଲ ଅଘାତ          ପରଚଣ୍ଡ ଝଞ୍ଜା ବାତ
ପତନ ପ୍ରାୟ ନିର୍ଘାତ, ହେଲେ ନିହତ
କାହିଁ ପଥିକ ତୃଷାର୍ତ୍ତ          ତୃଷାରେ ହୋଇ ଅରତ
ଜଳ ଭାବି ମରୀଚିକା ଧୁଅଇ ହତ
ସଦା ଧମୀର ଚତୁଃସମ
ଅନ ଜନେ ଦବା ନିଶି ଦଣ୍ଡେ କି ସମ ? ୩ ।

ଦିବସେ ପ୍ରଚଣ୍ଡ ଭାନୁ    କାଷ୍ଠରେ ଟିବକୃଶାନୁ
ସହିତ ପ୍ରଚଣ୍ଡ ବାତ ଯୋଗ ହୁଅଇ
ଜାଣି ମଧ୍ୟାହ୍ନେ ନିଦାଘ    ହେବ କି ଅଗ୍ନି ସଂଯୋଗ
କିବା ଜୀବନ୍ତ ଶରୀର ହୋଇବ ଦଗ୍ଧ
କାହିଁ ଗୃହଦାହ ହୁଅଇ
କାହିଁ କାଦମ୍ବିନୀ ବାତ ସ୍ଥିତ ଉଡ଼ାଇ । ୪ ।

ପଥିକମାନେ ପଥରେ    ଆତପତ୍ର ଧରି କରେ
ଗ୍ରୀଷ୍ମେ ତପ୍ତ ବାଲିରେ, ନୃତ୍ୟେ ଚଳିଲେ
ଥୋକେ ତପ୍ତ ନ ସହିଣ    ତା ବକ୍ଷ କରି ବିଦାରି
କରନ୍ତି ଈର୍ଷା ସାଧନ କୃଷିକ୍ଷେତ୍ରରେ
ତୋଷେ ବୁଣିଲେ ଧାନ୍ୟ ବୀଜ
ଗ୍ରୀଷ୍ମ ଶେଷ ରଜଃସ୍ୱଳା ମିଥୁନ ରଜ । ୫ ।

ରଜୋବତୀ କନ୍ୟାଗଣ    ତା ଉତ୍ସବ ସମ୍ପାଦନ
ପାଳନ କରନ୍ତି ବିଧିବିଧାନେ ରଜ
ଫଳାହାରେ ଦିନ ନେଇ    ବିବିଧ ଭୂଷଣ ହୋଇ
ନାନାବିଧ ଗୀତ ଗାଇ ହୁଅନ୍ତି ସଜ
କରଣି ସେ ରଙ୍ଗ ଢମାଳି,
ଏକୁ ଅରେକ ଡାକିଣ ଖେଳନ୍ତି ଦୋଳି ।୬।

ଯେତେହେଁ ପଶୁ, ପକ୍ଷୀ, ନରେ    ରଜସ୍ୱଳାର ପୂର୍ବରେ
ଧାତା ସୃଷ୍ଟି-ନିୟମରେ, ଗରମ ହୁଅନ୍ତି ।
ପ୍ରକାଶ ଆୟୁର୍ବେଦରେ    ସ୍ତ୍ରୀ ସ୍ୱଭାବ ସମୟରେ
ଖାଦ୍ୟପେୟ ବ୍ୟବସ୍ଥାରେ ଦରମ ଦ୍ୟନ୍ତି ।
ତେଣୁ ଏ ନୋହେ ନିଦାଘ,
ତବ ରଜସ୍ୱଳା ପାଇଁ ହୋଇଛି ଯୋଗ । ୭ ।

ତୋ'ପାଇଁ କୃଷକ କୂଳ ନିଧନ ନ ପୋରେ ହଳ
ଲୌହ ମୁନରେ ଖନନ ନ କରେ ମହୀ
ତୋ ଲୀଳା ସକାଶେ ଦେଖ ଭିଅଣୀ ଘା' ଚତୁର୍ମୁଖ
ଭ୍ରମରେ ବିପଥଗାମୀ ଜନେ ନ ହୋଇ ।
ଦେଖିଲାଲୀଳା ଏ ତୋର ମାୟା ।
ଅସ୍ତୁଏଁ ବିପ୍ର ନର୍ତ୍ତନେ କରନ୍ତୁ ଦୟା । ୮ ।

—:o:—

# ପଞ୍ଚମ ସର୍ଗ

## ବର୍ଷା-ବର୍ଣ୍ଣନା

(ରାଗ—ଅଷାଢ଼ ଶୁକ୍ଳ)

ନିଦାଘ ଶେଷେ ବରଷା ଆସଇ । ଗଗନେ ଜଳଦ ମାଳ ଭାସଇ ।
ସୁରକର ଅଗୋଚରେ ହୁଅଇ । ଅନ୍ଧ୍ୟାର ଧୂଳି ମାରି ଧାଅଇ ।
ଘଡ଼ଘଡ଼ିମାରେ
ନୀଳ ଘନ କୋଳେ ଚପଳା ଖେଳେ । ୧ ।

ଇନ୍ଦ୍ର ଇନ୍ଦ୍ରଧନୁ ଘନରୁ ଜାଳି, କଳ କଳ ନାଦେ ନିର୍ଝରେ ଜଳ ।
ସଳ ସଳ ଅମ୍ବୁସ୍ତମ୍ଭର କୂଳ, ଟଳ ଟଳ ପଦ୍ମ ପଲ୍ଲବେ ଜଳ ।
କଳା କଳା ତାଳ ।
ଛଳ ଛଳ ନେଇ ବରଦ୍ଧକୂଳ । ୨ ।

ତରି ଚରିପିବା ପଥିକ ବସି, ଝିଞ୍ଜି ଝିଞ୍ଜି ଅଭ୍ର ଉଚ୍ଛ୍ୱଳ ତାସ ।
ଧଳା ଧଳା ବଇଁ ସରସୀ ତୋରି, ଭାଉଁ ଭାଉଁ ବାଜେ ଭେକ ନାଗରି ।
ବକ୍ର ବକ୍ର ପରି ।
ଘଡ଼ ଘଡ଼ ଶବ୍ଦେ କମ୍ପାଏ ଧରି । ୩ ।

ବର୍ଷା ଧାର ଲଗି ଅନବରତ, ସରଣୀ ହୁଅଇ କର୍ଦ୍ଦମଯୁକ୍ତ ।
ବାର ପୂର୍ଣ୍ଣ ହୁଏ ଶସ୍ୟ କଥାର, କୃଷକ ଆନନ୍ଦ କେ କହିପାର !
କୃଷି ବେଉଷଣ ।
ସାବଣ ସନ୍ତୋଷେ ପ୍ରଫୁଲ୍ଲ ମନ । ୪ ।

ଧନୁ ଧନ ବଢ଼େ ସବୁଜ କ୍ଷେତ, ନଦେ ଅବିରାମ ଚଳଇ ସ୍ରୋତ ।
ନଦୀ ବହେ ଚଳେ ବିଶେଷ ପୋତ, ପଥିକମାନେ ହୁଅନ୍ତି ଯାତାୟାତ ।
ଧର୍ମସ୍ଥାନ ପାଇଁ ।
ବାଧି ଯା' ବିଧାନ ଅଛି ଉଆଇ । ୫ ।

କର୍ଦ୍ଦମ ନୋହେ ଏ ବରବର୍ଣ୍ଣିନୀ, ତଳ ଗନ୍ଧମଳା ସଙ୍ଗରେ ଜେନି ।
ଦାସୀ ପରିବାରେ ବୋଇତ ଭର, ଅସି ଅଛନ୍ତି କ ତୋ ସ୍ନାନ କର ?
ଯହୁଁ ଦନଯଶୀ ।
ସଲିଳେ ନ ଥିଲୁ ତୁ ଅବଗାହି । ୬ ।

ତେଣୁ ବାର ପୂର୍ଣ୍ଣ ହେଲା ତୋ' ଦେହେ,
ସ୍ନାନ ଘନ ନୀର ଅବିଳ ନୋହେ ।
ତେଣୁ ହଳଦ ଗନ୍ଧମଳା ଥିଲା, ତେଣୁ ସେ ଜଳ ଅବିଳ ହୋଇଲା ।
ନଦୀ ଗଲା ବନ୍ଧି ।
ଶରୀରୁ ମଳିନ ନେଲାକ ଧୋଇ । ୭ ।

କରୁ ଡରୁ ତଳେ ଶାଳର ବସି, ରଙ୍ଗଚଢ଼େ ମନେ ହୋଇଣ ଖୁସି ।
ମିଶିଣ ତା'ସଙ୍ଗେ ଡାହୁକ ସ୍ୱନ, ଯୁଗ୍ମ ମହୁରି କା, ବାଜିଲା ପୁଣ ?
ଧର୍ମ ସ୍ନାନ ବେଳେ ।
ବାଦ୍ୟକାର ଖଟିଥାନ୍ତି ସକଳେ । ୮ ।

ସୁରଙ୍ଗ ସୁରସ ସପୁତ୍ର ପାଟେର, ତସ୍କର ଜମ୍ବୁକ ଅକୁଟେଷ୍ଟ ଅଟେସ ।
ଡାଳ ବଟେନ ଡାଳ ପାଶ ପଡ଼ିଇ, ନୀଳ ଜଳଦ କି, ରଯା ଲୋଟଇ ?
ଜଳଦ ଡମ୍ବରୁ ।
କଦମ୍ବ ହରଇ ନେଯ ଦୂରରୁ । ୯ ।

ତମାଲ ସୁଷମା ଟେକେ କନ୍ଧପାର୍ଶ୍ୱ, ଖଜୁରବଟନ ପାଟଇ ଖଜୁର ।
କାହୁଁ ଚମ୍ପା ତରୁ ନ ଦେଖି କେହୁ, ବାତୁଳା ସମୀର ଦିଏ ଶଙ୍କାଇ ।
ବନେ ତରୁଲତା ।
ଘନ ଗହଳେ ଦିଶନ୍ତି ଶୋଭିତା । ୧୦ ।

କାହୁଁ ଦର୍ଭାଙ୍କୁରେ କୁରଙ୍ଗ ଯୂଥ, ଦ୍ରୁତେ ଚରନ୍ତି ସନ୍ତାନ ସହିତ ।
ଯହୁଁ ହୋଇଅଛି ଘଞ୍ଚ ଗହନ, ଆହ୍ଲାଦେ ଖେଳନ୍ତି ମାତା ସନ୍ତାନ ।
ମୟୂର ମୟୂରୀ ।
ନବ ଘନ ଅଟେ ନର୍ତ୍ତକୀ ପର । ୧୧ ।

ପୁଚ୍ଛ ଟେକାଣ ଚନ୍ଦ୍ରିକା ଦେଖାନ୍ତି,
ଭଉଁରୀ ଦେଇ ସେ ନୃତ୍ୟ କରନ୍ତି ।
କାହୁଁ କଣଲଗ୍ନ ବ୍ୟାଘ୍ର ଗାଭୀ, ନୀରବେ ଟେକଣ ସିଂହକୁ ଦବି ।
କାହୁଁ ଗଜ ଯୂଥ ।
ମୃତ୍ତିକା ଖୋଳିଣ ଲେପନ୍ତି ଗାତ୍ର । ୧୨ ।

କାହୁଁ ମଧୁଧର ହୁହୁଁ ନିର୍ଘୋଷ, କୁହୁ କୁହୁ ନାଦେ ବହଇ ବାଇ ।
କାନନ କାନ୍ତକେ ବର୍ଣ୍ଣି ପାରିବ, ମୀର ଭୂପତେ ଖଞ୍ଜିଛି ଦଇବ ।
କାହୁଁ କପିକୁଳ ।
ଜମ୍ବୁ ଚୂତ ବୃକ୍ଷୁ ଭକ୍ଷନ୍ତି ଫଳ । ୧୩ ।

ଧର ସ୍ନାନ ପାଇଁ ଅହ୍ଲାଦ ମନେ,
ପଶୁ, ପକ୍ଷୀ, ବୃକ୍ଷ, ଲତା ଯେସନେ ?
ମୋଦେ କୋଳାହଳେ କରନ୍ତ ଖେଳ,
ତବ କାନ୍ତି ବୃଦ୍ଧି ପାଇଁ କେବଳ ।
ହେ ପ୍ରକୃତିର ରାଣୀ ।
ତୋ ମହିମା ମୁଁ କି; ବର୍ଣ୍ଣିବ ପୁଣି । ୧୪ ।

—:o:—

# ଷଷ୍ଠ ସର୍ଗ

## (ଶରତ ବର୍ଣ୍ଣନା)

ରାଗ—ଢାଳୀ

ବରଷା ଶେଷେ, ଶରତ ଆସେ, ଆକାଶ ଦିଶେ ତାରା,
ଅମଳ ଜଳ, ହୁଏ ବିମଳ, ଉଦେ ଅଗସ୍ତି ତାରା । ୧ ।

ଭାନୁ କିରଣ, ହୁଅଇ କ୍ଷୀଣ, ଦିବସ ହୋଇ ସାନ,
ନିଶିରେ ପୁଣ ଶଶୀ କିରଣ, ଦିଶେ ଉଜ୍ଜ୍ୱଳ ଜାଣ । ୨ ।

ନଦୀ କୂଳରେ, ପଠା ପାଟରେ, ଫୁଟଇ କାଶତଣ୍ଡି,
ପ୍ରଦୋଷେ ଫୁଟି, ବାସ ଛାଡ଼ନ୍ତି, ଜହ୍ନି ବାଡ଼ରେ ମଣ୍ଡି । ୩ ।

ଟଙ୍ଗର ପାଣ, ରଙ୍ଗଣିପୁଷ୍ପ, ସନ୍ଧ୍ୟା ଆରତି ବେଳେ,
ଶ୍ୱେତ ଲୋହିତ, ସେ ପ୍ରସ୍ଫୁଟିତ, ସୁବାସ ଦାନ କରେ । ୪ ।

ପ୍ରକୃତ ରାଣୀ, ଓଢ଼ଣୀ ଟାଣି, ଆଲୋକବତୀ ଜାଳି,
କଅଁର ଜହ୍ନ, କୁମାରୀମାନ, ସହିତ ରଙ୍ଗେ ଖେଳି । ୫ ।

ରଜନୀ ଗନ୍ଧା, ହେନା ସୁଗନ୍ଧା, ବାସ ପେଟିକା ଧରି,
ମନ୍ଦ ମରୁତ, ହୋଇ ଉଦ୍ଧତ, ସୁବାସ ଚୋରି କରି । ୬ ।
ବାଟର ଜୀଏ, ନରନାରୀଏ, ସକଳ ପଶୁ ପକ୍ଷୀ,
ଛୋଟବଡ଼ ସାନ, ନ ମଣେ ଭିନ୍ନ, ଲକ୍ଷ୍ମୀ କୁଳ ଉପେକ୍ଷି । ୭ ।
ଦିବସ ଶେଷେ, ତାମସୀ ଆସେ, ଜ୍ୟୋତିରିଙ୍ଗଣମାନେ,
ଜଳାଇ ବତୀ, କି ବସିଛନ୍ତି, ତରୁ ଲତା ଗହନେ ? ୮ ।
ପୂରି ସରଣୀ, ସୁଖିଇ ପାଣି, ହୁଏ ଅହ୍ଲାଦ ମନ,
ସ୍ନାନ ଉତ୍ତାରେ, ଅଙ୍ଗନ ପରେ, ପିନ୍ଧି ବାସ ଚନ୍ଦନ । ୯ ।
ଧ୍ୟାନ କରଣି, ଇଷ୍ଟ ପୂଜଣି, ଲଭିଅଛୁ କି ବର ?
ସନ୍ତାନ ତବ, ଲଭନ୍ତୁ ଶୁଭ, ଏହି କାମନା ତୋର । ୧୦ ।
ପୂଜା ପାଇଁକି, ଯହିଁ ତହିଁକି, ନଦୀ, ପଲ୍ୱଳ ସର,
ଅଞ୍ଚଳ ଜଳ କରି ବିମଳ, ତୋ ମାୟା ଅଗୋଚର । ୧୧ ।
ଜଗତଜିତା, ଅପରାଜିତା, ନୀଳ, ଧବଳ ହୋଇ,
ଉଦ୍ୟାନ ମଧ୍ୟ, କେତେ ଅହ୍ଲାଦେ, ହରଷେ ବିରାଜଇ । ୧୨ ।
ପଲ୍ୱଳ ସରେ, ସ୍ୱଚ୍ଛ ସଲିଳେ, ନୀଳ ଧବଳ କଇଁ,
ସ୍ୱତଃ ପ୍ରବୃତ୍ତ, ସେ ପ୍ରସ୍ଫୁଟିତ, ତୋ ଇଷ୍ଟ ପୂଜା ପାଇଁ । ୧୩ ।
ରକ୍ତ କୁମୁଦ, ଲଭି ଆନନ୍ଦ, ପୂଜି ପାଇଛୁ ବର,
ନୋହିବ କ୍ଷୟ, ହେବା ପ୍ରଳୟ, ଯାଚେ ଶରୀର ତୋର । ୧୪ ।
ତୋ ପୂଜା ସ୍ମୃତି, ପ୍ରତିମୂରତି, ଶରତକାଳ ଦେବୀ,
ତୋପରି ପୂଜନ୍ତି, ବର ଲଭନ୍ତି, ପୂର୍ବର ସ୍ମୃତି ଭାବି । ୧୫ ।
ରାମ ଲକ୍ଷ୍ମଣ, ଦୁର୍ଗା ପୂଜଣି, କରିଲେ ଲଙ୍କା ଜୟ,
ଦନୁଜ ମାରି, ସେ ଦନୁଜାରି, ରଖିଲେ କୀର୍ତ୍ତିଚୟ । ୧୬ ।
ଉତ୍ସବ ହୋଇ, ରହିଛି ସେହି, ଦୁର୍ଗା ଦଶମୀ ଦିନ,
ସେ ପ୍ରତିମୂର୍ତ୍ତି, ଜନେ ପୂଜନ୍ତି, ପାଳିଣ ସ୍ମୃତି ଚିହ୍ନ । ୧୭ ।

ଚମ୍ପକ ବାନ୍ଧୁ ବଟ ରସାଳ ଅଶ୍ୱତ୍ଥ ଜଟି ଅଦ୍ଧ
ସେ ଉଦୁମ୍ବର ଜମ୍ବୁ ବକୁଳ ନବ ପର୍ଣ ପ୍ରସିଦ୍ଧ । ୧୮ ।
ପୁଷ୍ପ ପଲ୍ଲବ ପୂଜା ସମ୍ବନ୍ଧ ପାଇଁ ଶରତ କାଳ
ଭିଅଣ ତୋର ବନ ପ୍ରାନ୍ତର ମେରୁ ସାଗର ନୀର । ୧୯ ।

—c—

# ସପ୍ତମ ସର୍ଗ

## (ଶିଶିର ବର୍ଣ୍ଣନା)

(ରାଗ—ଅହାରୀ)

ଶରତ ଶେଷରେ ଶିଶିର ଅସନ୍ତେ ମହୀରେ ତୁଷାର ବର୍ଷିଲା
ନଗ, ହିମାଳୟେ ଯଥପତି କିବା ରଜତ ଭଣ୍ଡାର ଥୋଇଲା ।
ହେମନ୍ତ । ହିମାଳୟ ଶୋଭା ଦଶିଲା
ଶିଖରୀ ଶିଖରେ ନୂତନ ଶିଖରୀ ବିଧି କି ଅବା ଜାତ କଲା । । ୧ ।
ସୂର କର ପଡ଼ି କମଣ ତରଳ ସ୍ୱର୍ଣ୍ଣଦୀରେ ଯୁକ୍ତ ହୋଇଲା ।
କାହିଁ ଖଣ୍ଡେ ସ୍ତୂପ ବାନ୍ଧଣି;ଇମାଟ ସାଗର ଗର୍ଭରେ ପଡ଼ିଲା ।
ବଣିକ । ବଣିଜ ପୋତ ଅଟକିଲା ।
କେତେ ଯାତାୟାତ ପଥିକମାନଙ୍କ ସରଣୀ ରୁଦ୍ଧ ହୋଇଗଲା । ୨ ।
ବୈଦ୍ୟନାଥ ଧାମ ରୁଦ୍ଧ ହୋଇଗଲା ନାକେ ହୋଇଲା ପରଣତ ।
ଧରା ବାସୀମାନେ ଏ ସ୍ଥୂଳ ଦେହରେ ତାହାଙ୍କ ହେବେ ଉପଗତ ।
ତୁଷାର । ସକାଶେ ଏମନ୍ତ ହୋଇଲା ।
ଦର୍ଶନେଚ୍ଛୁ ଭକ୍ତ ହୋଇଲେ ପରାସ୍ତ ତୁଷାର ବରଷା ହୋଇଲା । ୩ ।

କୃଷକର କୃଷିକ୍ଷେତ ଦନ୍ତୁଦାନ ଦ୍ୱିଗୁଣ ଶୋଭିତ ହୋଇଲା ।
ପ୍ରଭାତେ ଶିଶିର ବିନ୍ଦୁ ବିନ୍ଦୁ ହୋଇ ଯେସ ଶ୍ୟାମଳେ ଝଲସିଲା ।
ହୀରକ । ପ୍ରସ୍ତର ଗଠିତ କି ମାଳା ।
ପଥିକଙ୍କ ଜନ ଭାବିଲେ ଯେସନ ପ୍ରକୃତି ରାଣୀଙ୍କ ଶୋଭିଲା । ୪ ।
ଶିଶିର ବର୍ଷନ୍ତେ ଟୋପ୍‌ମାଦ କେତେ ଫସଲ ପ୍ରଚୁର ହୋଇଲା ।
ପୁଷ୍ପ ଉଦ୍ୟାନରେ ନାନାଜାତି ପୁଷ୍ପ ପ୍ରସ୍ଫୁଟିତେ ମନ ମୋହିଲା ।
ସେ ଛବି । ଦୃଶ୍ୟ ଦର୍ଶକ ମୁଗ୍ଧ ହେଲା ।
ତୋ ସୁଖ ସ୍ୱଚ୍ଛନ୍ଦ ବର୍ଦ୍ଧନ ସକାଶେ ଶିଶିର ଋତୁ ଉଆଇଲା । ୫ ।
ଦିବସରେ ବାତାଘାତେ ଉଡ଼ି ରେଣୁ, ତରୁଲତା ଗୁଳ୍ମେ ଲାଗିଲା ।
ନିଶି ଉଜାଗରେ ପହାଇଣ ଶିଶିର ପ୍ରଭାତେ ତାହା ଧୋଇଦେଲା ।
ତୋ ଅଙ୍ଗେ । ବାସ ସାବୁନ ଲଗାଇଲା ।
ଉଦ୍ୟାନ ସୁବାସ ସହିତ ଶିଶିର ରେଣୁ ମଳିକୁ ଛଡ଼ାଇଲା । ୬ ।
କୃଷକର କୃଷିଜାତ ଶସ୍ୟ ପାଚି ବିବିଧ ବରଣ ହୋଇଲା ।
କାହିଁ ପୀତ, ଶ୍ୱେତ କାହିଁ ବା ଲୋହିତ ବରଣେ ଧରାକୁ ମଣ୍ଡିଲା ।
ସମୀର । ଆଘାତେ ତରଙ୍ଗ ଖେଳିଲା ।
କୃଷକ ଧାନ୍ୟକୁ କଟାଇ ବାନ୍ଧିଣ ବଳଦ, ଶକଟେ ଆଣିଲା । ୭ ।
ଯେସନେ ସମୁଦ୍ର ତରଙ୍ଗେ ନୋଳାଅ ତସ୍କର ସଙ୍ଘାତି ମାଇଲା ।
ତେସନେ [illegible] ।
କୃଷକ । ମନରେ ଆନନ୍ଦ ହୋଇଲା ।
ଷଡ଼ମାସଲାଗି ବେଜ୍‌ପଣି ଫଳ ମଞ୍ଜୁର ସମ୍ପୂର୍ଣ୍ଣ ପାଇଲା । ୮ ।
ଧନ୍ୟ ଗୋ ଜନନୀ ତୋ କାନ୍ତି ବର୍ଦ୍ଧନେ ଧାତା ଷଡ଼ଋତୁ ରଚିଲା ।
ତୋ ସନ୍ତାନ ପାଇଁ ନୂତନ ସା' ବ୍ୟବସ୍ଥା କରିବୁ ବିଧାନ ଗଢ଼ିଲା ।
ନିୟମେ । ଦିବସ ରଜନୀ ଗଢ଼ିଲା ।
ସ୍ୱେଦଜ, ଅଣ୍ଡଜ, ଜରାୟୁଜୋଦ୍ଭିଦ ଚତୁଃଶ୍ରେଣୀ ପ୍ରାଣୀ ଜନ୍ମିଲା । ୯ ।

—୦—

# ଅଷ୍ଟମ ସର୍ଗ

## ହେମନ୍ତ ବର୍ଣ୍ଣନା

(ରାଗ—ଚନ୍ଦ୍ରାଦେଶାଖ)

ଅସେ ହେମନ୍ତ **ଶିଶିର** ଶେଷେ । ନବ ଯୌବନେ କି ଜରା ଗ୍ରାସେ । ବୃକ୍ଷ, ଲତା, ଗୁଳ୍ମ, ତୃଣାଦି ସହିତେ । ଧରାଜାତ **ଶି**ରହୀନ ଦଶେ ହେ ବିଧାତା । ୧ । ବୃକ୍ଷୁଁ, ପତ୍ର ଯହୁଁ ଝଡ଼ିଗଲା । ଦୃଶ୍ୟ ସ୍ଥାଣୁ ପରାୟ ହୋଇଲା । ଲତା ଗୁଳ୍ମ ଆଦି ଉଦ୍ଭିଦ ସହିତେ, ପତ୍ରହୀନେ ଅଶୋଭା ଦିଶିଲେ ହେ ବିଧାତା । ୨ । ଶୁଷ୍କ ତରୁକି, କି ତପସ୍ୟା କଲେ । ତେଣୁ ଅଚିରେ ବର ଲଭିଲେ । ଶୀତାନ୍ତେ ବସନ୍ତେ ଯଥା ପାଲଟିବ ପୂର୍ବ ଶରୀର ଲଭିବ ଭଲେ ହେ ହେମନ୍ତ ।୩ । ଶୀତେ ଭାନୁ ରଶ୍ମି କ୍ଷୀଣ ହେଲା । ବହ୍ନି ଶ୍ରିୟୁକ୍ତ ପ୍ରାୟେ ଲାଗିଲା । ଧନହୀନେ ଜନେ ବସ୍ତ୍ର ନ ଲଭଣି, ବହ୍ନି ତାପେ ତନୁ କଲାହେଲା ହେ ବିଧାତା ।୪। ହିମବାୟୁ ଲାଗନ୍ତେ ଶରୀର । ଚର୍ମ ରୁକ୍ଷ ହେଲାକି ଅନ୍ତର । ରକ୍ତ ଶୁଷ୍କ ପ୍ରାୟ ଶରୀର ଦିଶନ୍ତେ, କାନ୍ତି ବିପରୀତ ହେଲା ତା'ର ହେ ବିଧାତା । ୫ । ଜନେ ବିବିଧ ଶୀତ ବସନ । ତୁଳା ଚସର, ଆଦି ପଶମ । ହିମ ଭୟେ ଯାହା କଲେ ଆବରଣ, ସବୁ ହୋଇଗଲା ଅକାରଣ ହେ ବିଧାତା । ୬ । ଯେତେହେନ ଦିବସ ଶେଷେ ରଜନୀ । କାଳ ମାଡ଼ି ବସିଲା କି ପ୍ରାଣୀ । ହିମ ଭୟେ ଜନେ ଲୁଚିଲେ ସଦନେ, କେତେ ନିଅଁଣ୍ଟିର ଆଶ୍ରା ବହ୍ନି ହେ ବିଧାତା ।୭। ବ୍ୟାଳ ଭୟେ ଯେସନେ ଇନ୍ଦୁର । ଦୂରୁ ଦେଖିଣ ପଶେ ବିଳର । ତଥାପି ବିଳରେ ବ୍ୟାଳ ପଶି ମାରେ ଆଶ୍ରା ନ ପାଏ କାହୁଁ ଇନ୍ଦୁର ହେ ବିଧାତା । ୮ । ଦୂରୁ

ବ୍ୟାଳ ଦେଖିଣ ନକୁଳ । ଯେହ୍ନେ ଉଧ୍ୱରେ ପଶଇ ଉଳ । ଲୁଚଲେ-
କ ସତେ ରକ୍ଷା ପାଇଯିବ, ଯେଣୁ ସନ୍ନ୍ୟତେ ରହିଛି କାଳ ହେ
ବିଧାତା ୯ । ଯହୁଁ ଭ୍ରମ ପ୍ରବଳ ହୋଇଲା । ସୂରକର ଅତି କ୍ଷୀଣ
ହେଲା । ହେମନ୍ତ ଦାଉରୁ ସନ୍ତାନ ସୁରକ୍ଷା, ପାଇଁ ହୃଦେ ତବ
ଚିନ୍ତା ହେଲା ହେ ବସୁଧେ । ୧୦ । ତେଣୁ ଆଦିତ୍ୟ କହିଲେ ଯାଇଁ ।
କର ପ୍ରଖର କରିବାପାଇଁ । ସୂର ତବ ବାଣୀ ଦମ୍ଭରେ ନ ଶୁଣି-
ବାରୁ ଫେରିଲେ କ ବ୍ରୀଡ଼ା ପାଇ ହେ ବସୁଧେ । ୧୧ । ତହୁଁ ହେଲା
ଈର୍ଷା ଜର୍ଜରିତ । ଗର୍ବ ଖର୍ବ କରିବ ଆଦିତ୍ୟ । କପଟ ତାହାଙ୍କୁ
ଅଣିବ ମର୍ତ୍ତ୍ୟକୁ, ବ୍ରୀଡ଼ା ପ୍ରତିଶୋଧର ବିହିତ ହେ ବସୁଧେ । ୧୨ ।
ଯାଇ ସିନ୍ଧୁ ବେଳାରେ ପ୍ରବେଶି । ମୌନ ବ୍ରତେ ହୋଇଲେ
ତପସ୍ୱୀ । ମାୟା କନ୍ୟା ଏକ ଶରୀରୁ ସମ୍ଭବି, ରୂପେ ଲଜ୍ଜିତ ରମ୍ଭା
ଉର୍ବଶୀ ହେ ବସୁଧେ । ୧୩ । ତ୍ରିଭୁବନେ କେ ସରି ନୋହିଲା ।
ଦୀପ୍ତି ଲୋକଚକ୍ଷୁ ବିକାଶିଲା । ଭାଗ୍ୟେ କି ଚନ୍ଦ୍ରମା ହୋଇଛି
ଉଦୟ, ତେଣୁ ନାମ ଚନ୍ଦ୍ରଭାଗା ହେଲା ହେ ବସୁଧେ । ୧୪ ।
କ୍ରମେ ଦିବା କେତେ ବିତିଗଲା । ତହୁଁ କନ୍ୟା ଷୋଡ଼ଶୀ ହୋଇଲା ।
ରୂପଗୁଣେ କୋଟି ରତି ନିନ୍ଦିଲକ ଛବି କବି ବର୍ଣ୍ଣନେ ନୋହିଲା
ହେ ବସୁଧେ । ୧୫ । ଦିନେ ପର୍ଣ୍ଣକୁଟୀ ମଣ୍ଡିଆର । ଖାଦ୍ୟ
ଆହରଣେ କିଛିଦୂର । ଚନ୍ଦ୍ରଭାଗା ଫଳମୂଳ ଖୋଜି ବନେ
ଭେଟ ହୋଇଲା ଦେବର୍ଷିଙ୍କର ହେ ବିଧାତା । ୧୬ । କନ୍ୟା ସଲଜ୍ଜିତେ-
ରେ ନମୁପାଦ । କରି ବାତ୍ସଲ୍ୟ ସ୍ନେହ ନାରଦ । ପୁଚ୍ଛା କଲେ ମାତ,
କହ କୁଳ, ଗୋତ୍ର, ଅଟ ତୁମ୍ଭେ କାହାର ଦୋହିତ ହେ କୁମାରୀ ।୧୭।
କିବା ଛଦ୍ମବେଶ ଧରି କରି । ଆସିଅଛ ସ୍ୱର୍ଗରୁ ଅପ୍ସରୀ । କିବା
ରାହୁ ଡରେ ଲୁଚିଛ ଚନ୍ଦ୍ରମା, ମର୍ତ୍ତ୍ୟେ ଆସି କନ୍ୟା ରୂପ ଧରି ହେ ।

କୁମାରୀ । ୧୮ । କିବା; ପ୍ରଭୁଙ୍କ ଅଭିମାନରେ । ଅସିଅଛ କମଳା ମର୍ତ୍ତ୍ୟରେ । କିବା ହରଙ୍କର ଉପଦ୍ରବ ଯୋଗୁଁ, ଖୋଜ ଉମାକୁ ତପୋବନରେ ହେ କୁମାରୀ ।୧୯। କିବା ମଘବା କି କଲେ କୋପ । କୋଧେ ଅସିଅଛ ଶଚୀ ମର୍ତ୍ତ୍ୟ । ବ୍ୟାଜ କମ୍ପା ସତ୍ୟ କିଛି ନ ବୁଝୁଁଛି, କହ ତବ କୁଳଗୋତ୍ର ସତ୍ୟ ହେ । କୁମାରୀ । ୨୦ । ଶୁଣି ଚନ୍ଦ୍ରଭାଗା ଋଷି ବାଣି । ପିତା ତପସ୍ୱୀ ନାମ ନ ଜାଣି । ବ୍ୟାଜ ନୋହେ ଏହା ସତ୍ୟ ବଖାଣୁଛି, ପର୍ଣ୍ଣକୁଟୀରୁ ଅସନ୍ତୁ ଶୁଣି ହେ । ଦେବର୍ଷି । ତହୁଁ ନାରଦ ପର୍ଣ୍ଣକୁଟୀରେ । କନ୍ୟା ସହିତରେ ଗଲେ ଧୀରେ । ପ୍ରବେଶ ହୁଅନ୍ତେ ପର୍ଣ୍ଣକୁଟୀ ଦ୍ୱାରେ, ବ୍ୟାଜ ତପସ୍ୱୀ ଦେଖି ନେତ୍ରରେ ହେ ବିଧାତା । ୨୨ । କ୍ଷିପ୍ର ଅର୍ଘ୍ୟ କଲେ ଧୌତପାଦ । ତେଣେ ମାୟା ଗ୍ରାସିଲା ନାରଦ । ଯାଇଥିଲେ ଯହିଁ ପାଇଁ ନ ପୁଚ୍ଛିଲେ, ହୋଇଗଲେ କି ସେ ଜ୍ଞାନଅନ୍ଧ ସେ । ଦେବର୍ଷି । ବ୍ୟାଜ ତପସ୍ୱୀ ପ୍ରୀତ ହୋଇଲେ । କୃଷ୍ଣାଜିନ ମୃଗଚର୍ମ ଦେଲେ । ବିଶ୍ରାମ କରନ୍ତୁ ବୋଲିଣ ତପସ୍ୱୀ, ଦେବର୍ଷିଙ୍କୁ ବଚନ ଭାଷିଲେ ସେ ତପସ୍ୱୀ । ୨୪ । ମୃଗଚର୍ମରେ ବସି ତପୋଧନ ପ୍ରଶଂସନ୍ତି ଧନ୍ୟ ତପୋଧନ । ସ୍ୱର୍ଗ, ମର୍ତ୍ତ୍ୟ, ରସାତଳ, ତ୍ରିଭୁବନେ, ନ ଦେଖିଲି ଏ ସୁରମ୍ୟ ସ୍ଥାନ ହେ ତପସ୍ୱୀ । ୨୫ । ବ୍ୟାଜ ତପସ୍ୱୀ ଭାଷିଲେ ଗୀର । ଧନ୍ୟ ହେଲା ଏ ପର୍ଣ୍ଣକୁଟୀର । ତବ ଆଗମନେ ହୋଇଲି କୃତାର୍ଥ, ଥିଲା ଦର୍ଶନ ଭାବନା ମୋର ହେ । ଦେବର୍ଷି । ୨୬ । ବେଳ ହେଉ ସମ୍ଭାଷଣ ବେଳ । ଚନ୍ଦ୍ରଭାଗା ଆଣି ଫଳମୂଳ । ବୋଇଲା ଭୋ ତାତ କରନ୍ତୁ ଭୋଜନ, ହୋଇଯିବ ପରାହ୍ନର ବେଳ ହେ ପିତର । ୨୭ । ପୂର୍ବପରବତ ସାଥି ଭାବ । ନୁହେଁ ଅନ୍ତର ଗଲା କି ଦ୍ରବ । ଅବଦ୍ଧ ପିଞ୍ଜର, ପ୍ରାୟ ଶୁକଶାରୀ

ଦେବର୍ଷିଙ୍କୁ ବ୍ୟାଜ ବସ୍ତ୍ରଧାରୀ ହେ ବିଧାତା । ୨୮ । ବେନି
ଋଷି ସାରି ଫଳାହାର । ସନ୍ଧ୍ୟା ତର୍ପଣେ ହେଲେ ବାହାର ।
ଇତ୍ୟବସରରେ ମାୟା ଋଷି କନ୍ୟା, କ୍ଷୁଧା ପିପାସା କରିଲେ
ଦୂର ହେ ବିଧାତା । ୨୯ । ଦିବା ଅବସାନରେ ଶର୍ବରୀ । ବେନି
ଋଷି ଆଶ୍ରମକୁ ଫେରି । ଯାଗ କୁଣ୍ଡପାଶେ ବସିଣ ସୁରତେ,
ନାନାବିଧ ସମ୍ଭାଷଣ କରି ସେ ତପସ୍ୱୀ । ୩୦ । ବାକ୍ୟ ଛଳରେ
ବ୍ୟାଜ ତପସ୍ୱୀ । ପୁଚ୍ଛାକଲେ ଶୁଣ ଦେବଋଷି । ତପସ୍ୱୀଙ୍କୁ ଏକ
ସଦ୍ୟଜାତ କନ୍ୟା, ପାଇ ଅନ୍ତରେ ହୋଇଲି ଖୁସି ହେ
ଦେବର୍ଷି । ୩୧ । ଯହୁଁ ଚନ୍ଦ୍ରମା ପରିଏ ଆଭା । ଦେଖି ମନ ମୋ
ହୋଇଲା ଲୋଭା । ଭାଗ୍ୟେ ପାଇ ଯତ୍ନେ ପାଳି ନାମ ଦେଲି,
ହତଭାଗା କନ୍ୟା ଚନ୍ଦ୍ରଭାଗା ହେ ଦେବର୍ଷି । ୩୨ । କ୍ରମେ ଦିବା
ଜେତେ ବଢ଼ିଗଲା । ଦୈବଯୋଗେ ଷୋଡ଼ଶୀ ହୋଇଲା । ଋଷି
ଆଶ୍ରମରେ ଷୋଡ଼ଶୀ ଯୁବତୀ ରଖିବାକୁ ଉଚିତ ନୋହିଲା ହେ ।
ଦେବର୍ଷି । ୩୩ । ତେଣୁ ଭାବିଥିଲି ହୃଦୟରେ । ତବ ପାଦେଶ
ମିଳାଣି ସତ୍ୱର । ଚନ୍ଦ୍ରଭାଗା ବିଭା କରାଇବା ପାଇଁ, ରୂପ ଗୁଣେ
ଉପଯୁକ୍ତ ବର ହେ ଦେବର୍ଷି । ୩୪ । ଖୋଜି ଆଣି ପାରିବେ
ଆପଣ । ତେଣୁ ଭ୍ରମୁଛନ୍ତି ତ୍ରିଭୁବନ । ଦୈବଯୋଗେ ଅଦ୍ୟ
ତବ ଆଗମନ, ଦେଖିହେଲା ମନୋରଥ ପୂର୍ଣ୍ଣ ହେ ଦେବର୍ଷି ।୩୫।
ଚନ୍ଦ୍ରଭାଗା ମୋ ପାଳିତା କନ୍ୟା । ତାକୁ ବିଭା ଦେଇ ହେବି
ଧନ୍ୟା । କହନ୍ତୁ ବିସ୍ତରି ମିଳିବ କିପରି, ବର; ଅନୁରୂପେ ଯୋଗ୍ୟ
କନ୍ୟା ହେ ଦେବର୍ଷି । ୩୬ । ଋଷିବାଣି ଶୁଣିଣ ଦେବର୍ଷି,
ନୀରବରେ ବାକ୍ୟ ନ ପ୍ରକାଶି । ଅଧ, ଊର୍ଦ୍ଧ୍ୱ, ମଧ୍ୟ ମନ ମଧ୍ୟେ ଭାବି,
କ୍ଷଣେ ନିଷ୍ଠ ନେତ୍ରେ ରହିଲେ ବସି ସେ ଦେବର୍ଷି । ୩୭ । ପରେ
ଭାଷିଲେ ଗମ୍ଭୀର ଗିର । କନ୍ୟା ଅନୁରୂପେ ଯୋଗ୍ୟ ବର ।

ତ୍ରିଭୁବନ ମଧ୍ୟେ ମିଳିବା ଦୁର୍ଲଭ, ତେଣୁ ଉଚିତ ତା ସ୍ୱୟମ୍ବର ହେ ତପସ୍ୱୀ । ୩୮ । ମାୟାପତି ଏ'ବାଣି ଶୁଣିଣି ଦେବର୍ଷିଙ୍କୁ ପୁଚ୍ଛା କଲେ ପୁଣି । ତପସ୍ୱୀ ପକ୍ଷରେ ଏହା ଅସମ୍ଭବ, ଅଯୋଗ୍ୟ ଜାନ, କରନ୍ତୁ ଆପଣ ହେ ଦେବର୍ଷି । ୩୯ । ଧର୍ମ ପିତାପଣେ କନ୍ୟାଦାନ । ଏହି ଯଶ ଲଭନ୍ତୁ ଆପଣ । ମକର ଶୁକ୍ଳ ସପ୍ତମୀ ତିଥି ଅଛି ରହିଲା ପନ୍ଦର ଦିନ ହେ ଦେବର୍ଷି । ୪୦ । ତହିଁ ରହିଛି ପାଣିଗ୍ରହଣ । କନ୍ୟା ରାଶିରେ ଜୀବ ପଞ୍ଚମ । ତ୍ରିଭୁବନ ଜନେ ଆଣି ନିମନ୍ତ୍ରଣେ ସ୍ୱୟମ୍ବର କରନ୍ତୁ ଆପଣ । ହେ ଦେବର୍ଷି । ୪୧ । ଶୁଣି ଦେବର୍ଷି ହୋଇଲେ ଖୁସି । ବାକ୍ୟାଳାପେ ପୁହାଇଲେ ନିଶି । ପ୍ରଭାତରୁ ସ୍ନାନ ତରପଣ ସାରି, ବିଭା ଆୟୋଜନେ ଗଲେ ଋଷି ହେ ବିଧାତା । ୪୨ ।

---

# ନବମ ସର୍ଗ

## (ରାଗ-ରସକୁଲ୍ୟା)

ଚନ୍ଦ୍ରଭାଗା ସ୍ୱୟମ୍ବର ହେବାର, ବେନି ଋଷିମିଳି କଲେକ ସ୍ଥିର ।
ଦିବସ ରହିଛି ଆଉ ପନ୍ଦର, ଶୁକ୍ଳ ସପ୍ତମୀ ମାସ ମକର ଯେ ।
ଏହି ବିଭା ଆୟୋଜନ ଯେ ।
ଦେବର୍ଷି ନାରଦ ହୋଇଣ ଆନନ୍ଦ କଲେ ସର୍ବ ନିମନ୍ତ୍ରଣ ଯେ ।୧।
ଅଳକାପୁରେ ଦେବର୍ଷି ଯାଇଣି, ଯକ୍ଷପତିଙ୍କୁ କଲେ ନିମନ୍ତ୍ରଣ ।
ବୋଇଲେ ଏକ ଧର୍ମ କନ୍ୟା ମୋର,
ମର୍ତ୍ତ୍ୟେ ଚନ୍ଦ୍ରଭାଗା ନାମ ତାହାର ଯେ ।
ହେବ ତାର ସ୍ୱୟମ୍ବର ଯେ ।
କିନ୍ନରମାନଙ୍କୁ ନେଇଣି ମର୍ତ୍ତ୍ୟକୁ, କନ୍ୟା ଅଳଙ୍କୃତ କର ଯେ ।୨।

ବିଶ୍ୱକର୍ମା ପୁରେ ତାହୁଁ ପ୍ରବେଶି, ବୋଇଲେ ବଚନ ତାଙ୍କୁ ଆଶ୍ୱାସି ।
ଅସ୍ଥାୟୀ ଛାୟା ମଣ୍ଡପ ଗୋଟିଏ,
ନିର୍ମିବ ତାହୁଁ ନ ବାଛିବେ କିଏ ଯେ ।
ଚନ୍ଦ୍ରଭାଗା ସ୍ୱୟମ୍ବର ଯେ ।
ଚଳିଣି ଅଚିରେ ସାଗର କିନାରେ, ସିଦ୍ଧ ସନ୍ତ ଆଶ୍ରମର ଯେ ।୩।

ଆଦିତ୍ୟ ଇନ୍ଦୁ ଆଦି ଗ୍ରହଗଣ, ଇନ୍ଦ୍ରାଦି ଦଶ ଦିଗପାଳ ପୁଣ ।
ଯକ୍ଷ କିନ୍ନର ଗନ୍ଧର୍ବ ସହିତେ, କଲେ ନିମନ୍ତ୍ରଣ ଯେ ଯାହାମତେ ଯେ ।
ବୈକୁଣ୍ଠରେ ନାରାୟଣ ଯେ ।
ରୁଦ୍ର,ପ୍ରଜାପତି, ବାଲ୍ମୀକି ଅଗସ୍ତି, ବଶିଷ୍ଠ, ଆଦି ଗୌତମ ଯେ ।୪।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳେ ଯେତେ ଜନ,
ବିଧି ବିଧାନେ କଲେ ନିମନ୍ତ୍ରଣ ।
ଖାଦ୍ୟ ବ୍ୟବସ୍ଥା ସକାଶେ ଅତିଥି, କମଳାଙ୍କ ପାଶେ ମିଳି ବିନତିଯେ ।
ମାତ ଅବିଳମ୍ବେ ଚଳ ଯେ ।
ନିମନ୍ତ୍ରିତ ବ୍ୟକ୍ତି ଆସୁର ଅତିଥି, ଖାଦ୍ୟ ଯୋଗାନ୍ତୁ ସକଳ ଯେ ।୫।

ସ୍ୱୟମ୍ବର ସମୟ ଦିବସ ଥାଇ, ଦେବର୍ଷି ମିଳିଲେ ଆଶ୍ରମେ ଯାଇ ।
ଦେଖି ବ୍ୟାଜପତି ମନେ ହରଷ,
ପାଦ୍ୟ ଅର୍ଘ୍ୟଦେଇ ନେହାଇଲେ ତୋଷ ଯେ ।
ଦେବର୍ଷି ବୋଇଲେ ଶୁଣି ଯେ ।
ତ୍ରିଭୁବନ ଜନ ସର୍ବେ ଆମନ୍ତ୍ରିଣି, ଆଇଲେ ତବ ଆଶ୍ରମ ଯେ ।୬।

ସର୍ବ ଆୟୋଜନ ଶେଷ ହୋଇଛି, ତବ କନ୍ୟାକୁ ଆଉ ନାହିଁ କିଛି ।
ଆଗନ୍ତୁକ ବ୍ୟକ୍ତି ଅତିଥିମାନ, ଚଣ୍ଡାଳ ହୁଅନ୍ତୁ କିବା ବ୍ରାହ୍ମଣ ଯେ ।
କିବା ପତି କିବା ରାଜା ଯେ ।
ଦେଖିଣି ହାରି ବା ହେଉନ୍ତୁ ପଛକେ, କିବା ରାଜାର ପରଜା ଯେ ।୭।

ସର୍ବ ପାଉଛନ୍ତି ଅଣିବ ବହନ, ଯେତେହେଁ ନୋହିବ ତାର ଅସମ୍ମାନ ।
କମଳା କୁଟିବେ ଖାଦ୍ୟ ବ୍ୟବସ୍ଥା,
ହେଣ୍ଟୁ ଯେ ଅଟନ୍ତି ତୈଲୋକ୍ୟ ମାତା ଯେ ।
ଅସିବେ ଅଳକାପତି ଯେ ।
କନ୍ୟାମାନଙ୍କୁ ଅଣାଇ ଏଠାକୁ, କରିବେ କନ୍ୟାର ସାଥି ଯେ ।୮।

ଶୁଣି ମାୟା ଯତି ହୋଇଣ ମୋଦ,
ନାରଦଙ୍କୁ ଦେଲେ ଯେ ଧନ୍ୟବାଦ ।
ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ଦେବର୍ଷି,
ତବ ଆୟୋଜନେ ହୋଇଲି ଖୁସି ଯେ ।
ନୋହେ ଏ ମନ୍ଦ ବସ୍ତୁର ଯେ ।
ମନେ ମନେ ଯତି ଚିନ୍ତିଣ ବୋଲନ୍ତି,
ମୋ ଲଜ୍ଜା ହୋଇବ ଦୂର ଯେ ।୯।

ବିଶ୍ୱକର୍ମା ରଚ୍ୟା ମଣ୍ଡପ ରଚି, ସ୍ଫଟିକ ପ୍ରବାଳ ତହିଁରେ ଖଚି ।
ବିବିଧ ପୁଷ୍ପ ଚୂତପତ୍ରମାନ, ରମ୍ଭା ବୃକ୍ଷ ସ୍ତମ୍ଭଃପାର୍ଶ୍ୱେ ରୋପିଣ ଯେ ।
ପଟ୍ଟବସ୍ତ୍ରେ ଚନ୍ଦ୍ରାତପ ଯେ ।
ମଣ୍ଡପ ନିର୍ମାଣି ହୋଇଲେ ଟମଲିଣି, ଦେବର୍ଷି, ଯତି, ସମୀପ ଯେ ।୧୦।

ଆମନ୍ତ୍ରିତ ସର୍ବ ଅତିଥିଗଣ, ଯେ ଯାହା ସମ୍ପାରେ ମିଳିଲେ ପୁଣି ।
ନିର୍ଦ୍ଦିଷ୍ଟ ସ୍ଥଳରେ ହୋଇ ପ୍ରବେଶ;
ଦେବର୍ଷି ସତ୍କାରେ ହୋଇଲେ ତୋଷ ଯେ ।
ବ୍ୟାସ ବଶିଷ୍ଠାଦ୍ୟ ଋଷି ଯେ ।
ଷୋଡ଼ଶୋପଚାରେ ବିଧି ବିଧାନରେ
ପୂଜନ୍ତେ ହୋଇଲେ ଖୁସି ଯେ ।୧୧।

ଯକ୍ଷପତି ସହ କଳତ୍ରଗଣ, ପୂର୍ବୁଁ ଅସିଥିଲେ ଯତି ଆଶ୍ରମ ।
ଚିତ୍ରରେଖା, ତିଲୋତ୍ତମା; ମେନକା;
ଚନ୍ଦ୍ରଭାଗା ପ୍ରିୟ ସାଥି ନାୟିକା ଯେ ।
ଯେତେକ ଅଙ୍ଗନାର ସାଥି ଯେ ।
ଥିଲପ୍ରାୟ ମନେ ଭୁବନ ଆଶ୍ରମେ ଚନ୍ଦ୍ରଭାଗା ମଣିଛନ୍ତି ଯେ । ୧୨ ।

ପ୍ରଜାପତି ପଶୁପତି ଶ୍ରୀପତି; ଗ୍ଲୟ ମଣ୍ଡପ ଦେଖିଣ ଭାବନ୍ତି ।
ଦେବସଭା ପ୍ରାୟ ଧରଇ ଶୋଭା, କବା ଶଚୀପତି କରନ୍ତି ସଭା ଯେ ।
ହୃଦ ମଧ୍ୟେ ପ୍ରଶଂସନ୍ତି ଯେ ।
ଦେଖି ମାୟାଯତି ଅସିଣ ତ୍ୱରିତ; ହସ୍ତେ ପାଦ ପ୍ରକ୍ଷାଳନ୍ତି ଯେ । ୧୩ ।

କୃଷ୍ଣାଜିନାସନ ତାହାଙ୍କୁ ଦେଇ;ସବିନୟେ କନ୍ଦଫଳ ଭୁଞ୍ଜାଇ ।
ଯନ୍ତୁଁ ସେ ପ୍ରକୃତ କରନ୍ତି ମାୟା;
ଆମନ୍ତ୍ରିତ ଜନେ ଗ୍ରାସିଛି ତାହା ଯେ ।
ଆଶ୍ରମ କୁ ଯତି ନାମ ଯେ ।
ପିତୃବର ନ ବୁଝି ବ୍ୟାକୁଳେଥାନ୍ତି ମନ୍ତ୍ରି, ଥାଏ ପରଚିତ ଜ୍ଞାନ ଯେ ।୧୪।

ପ୍ରତିବର ମକର ଶୁକ୍ଳ ସପ୍ତମୀ, ଚିତ୍ରରେଖା ଗ୍ରଇ ଦେବର୍ଷି ମୁନି ।
ବୋଲେ ଏ ଭୁବନ୍ତୁ ନିମନ୍ତ୍ରଜନ କରିବେ ଆଶ୍ରମେ କ୍ଷିପ୍ର ଗମନ ଯେ ।
କନ୍ୟା ଅଲଂକୃତ କର ଯେ ।
ତୁଳସୀ, ରୁଦ୍ରାକ୍ଷ, ପୁଷ୍କର, ଭଦ୍ରାକ୍ଷ, ମାଳେ ଅଲଙ୍କାର ଭର ଯେ ।୧୫।

ଚିତ୍ରରେଖା, ସୁରେଖା, ତିଲୋତ୍ତମା, ଘୃତାଚୀ ଆଦି ସମସ୍ତ ବାମା ।
ସହଚରୀ ଚନ୍ଦ୍ରଭାଗାକୁ ଗ୍ରଇ, କଏ କେତେ ପରିହାସେ ଭାଷଇ ଯେ ।
ହେବ ପରା ସ୍ୱୟମ୍ବର ଯେ ।
ମନମଧ୍ୟେ ଇଚ୍ଛି ତହୁଁ ବାଛି ବାଛି,
ଘେନ ତବ ଯୋଗ୍ୟ ବର ଯେ ।୧୬।

ସାଥି ଚନ୍ଦ୍ରଭାଗା କଞ୍ଛ ନ ଭଷି, ସଖି ଦ୍ୟନ୍ତ ପାଦେ ମଞ୍ଜିଷ୍ଠା ଘସି ।
କିବା ଶୋଣିତ ବେଣ୍ଣ ପାଦୁଝରେ,
କେ ସଖି ପ୍ରବାଳ ବାନ୍ଧଇ କରେ ଯେ ।
କେ ସଖି କଙ୍କଣକାରେ ଯେ ।
ଯତନେ ଶାଳ୍ମଳୀ କୁଞ୍ଚିତେ ସଜାଡ଼, କେଶକୁ ସ୍ୱୟମ୍ବରେ ଯେ ।୧୭।
ତଥିପରେ ମେବତୀ ପୁଷ୍ପଗୁଞ୍ଜି, ଯୁବାଜନ ଦର୍ପ ଦେବକି ଭଞ୍ଜି ।
କେ ସଖି ବାହୁରେ ରୁଦ୍ରାକ୍ଷ ବାନ୍ଧେ,
କୋଟି ଗୁଣେ ବାହୁଟି ଦର୍ପ ନନ୍ଦେ ଯେ ।
କେ ସଖି ପାଦେ ପୁଷ୍କର ଯେ ।
ମାଳକୁ ବାନ୍ଧଇ ଦର୍ପକୁ ଗଞ୍ଜଇ କୋଟିଗୁଣେ ନୂପୁରର ଯେ ।୧୮।
ଚମ୍ପକ ପୁଷ୍ପ ମାଳା ବକ୍ଷସ୍ଥଳେ, ସେବତୀ ଗଜରା ହାର ଉପରେ ।
ସୁବର୍ଣ୍ଣ, ମୋତି, ମାଳକୁ ନନ୍ଦଇ,
କାନ୍ତ ଦେଖି ମାର ହୋଇବ ଦନ୍ଧ ଯେ ।
ତିନି ଭୁବନେ ଉପମା ଯେ ।
ଦେବାକୁ ସୁଷମା, ନୋହିବ କେ ବାମା,
ମାୟାଯନ୍ତ ମାୟା ଜେମା ଯେ ।୧୯।
ବନ ଫଳ ପୁଷ୍ପେ କର ମଣ୍ଡଣି, ବର୍ଣ୍ଣନେ କବି ନ ପାରିବେ ବର୍ଣ୍ଣି ।
ଚନ୍ଦ୍ରଭାଗା ମନେ କରେ ବିଗ୍ଭର, ସତ୍ୟ ଯଦି ଧରା ନ ମିଳୁ ବର ଯେ ।
ତୋ କୋଳେ ସଲିଳେ ବାସ ଯେ ।
ଦେଖିଣ ମୋ ତନୁ ମୋହିହୋଇ ଭାନୁ,
ଶେଷେ ହୁଅନ୍ତୁ ନିରାଶ ଯେ ।୨୦।
ଦଅ ମାତ ତୀକ୍ଷ୍ଣ ତେଜ କେତେ, ସର୍ବଜନେ ଅସୁ ମାତୃ ଭକତେ ।
ବ୍ୟାଜେ ସକଳେ ନ ଜାଣନ୍ତୁ କିଛି,
ମାର ପଞ୍ଚରେ ମାରନ୍ତୁ ବାଛି ଯେ ।

କାମ ମୋହେ ଦବାକର ସେ ।
ମୋ ଲଭିବା ପାଇଁ ଆସନ୍ତୁ ସେ ଧାଇଁ,
ଦିଅ ମୋତେ ଏହିବର ଯେ ।୨୧।

ମନେ ସତ୍ୟ କଲ ଯହୁଁ ତରୁଣୀ, ବର ଦେଲେ ମନାଇ ଧରଣୀ ।
ଏକଥା ସଭାସଦ ନ ଜାଣନ୍ତି
ସତୀ ବାକ୍ୟେ ତୁଷ୍ଟ ସେ ବସୁମତୀ ଯେ ।
ମନ ବାଞ୍ଛା ସିଦ୍ଧ ହେଉ ଯେ ।
ବରଦେଇ ଭଲେ ଅଦୃଶ୍ୟେ ଚଳିଲେ;
ଯୁଗେ ଯୁଗେ ଯଶଥାଉ ଯେ ।୨୨।

ସ୍ୱୟମ୍ବର ଲଗ୍ନବେଳ ହୁଅନ୍ତେ, ଆମନ୍ତ୍ରିତ ଜନ ମିଳି ସମସ୍ତେ ।
ଯଜ୍ଞ ମଣ୍ଡପରେ ବସିଲେ ଯାଇ
ଯତି ନାରଦ ଭାଷେ ତୁଷ୍ଟହୋଇ ଯେ ।
ଶୁଣନ୍ତୁ ସର୍ବ ବିବୁଧେ ଯେ ।
କନ୍ୟାରତ୍ନ ଆସି ତା’ ମନ ଉଲ୍ଲାସି; ବର ବାଛୁ ସଭାମଧ୍ୟେ ଯେ ।୨୩।

ଯା’ଗଳେ ଦେବ ସେ ବରଣମାଳ; ବିଧାନରେ ସେହୁ ହେବ ତା’ବର ।
ନିଗମ ବିଧିରେ ନବ ଦମ୍ପତି; ରତ୍ନ ବେଦୀପରେ ବସିଣ ଯତି ଯେ ।
କରିବେ ସେ କନ୍ୟା ଦାନ ଯେ ।
ହେଷ ନ ବହିଣ ସଭାସ୍ଥିତ ଜନ; ଚଳିବେ ନିଜ ସଦନ ଯେ ।୨୪।

ଭାଷିଣି ଦେବର୍ଷି ଫେରି ଅକ୍ରମେ; ତିଲୋତ୍ତମା ଗାଇ ମୃଦୁ ବଚନେ ।
ବୋଇଲେ ଚନ୍ଦ୍ରଭାଗାକୁ ଘେନିଣ; ଲଘୁ ଛାଡ଼ି ଆସ ସଭା ସଦନ ଯେ ।
ହସ୍ତେ ଘେନି ବରମାଲ୍ୟ ଯେ ।
ସ୍ୱଇଚ୍ଛା ଯାହାକୁ ସେ ବରମାଲ୍ୟକୁ ଲମ୍ବାଉ ତା’ ବକ୍ଷସ୍ଥଳ ଯେ ।୨୫।

ଋଷିବାଣି ଶୁଣିଣ ତଳୋତ୍ତମା; ସର୍ବସାଥି ଗହଣେ ଯତ ପ୍ରେମା ।
ଯେମନ୍ତ ଚଳନ୍ତେ ସଭା ସଦନ; କରି ପଞ୍ଚ ଲକ୍ଷଣ ପ୍ରବେଶିଣ ଯେ ।
ମଥା ନୁଆଇଁ ପ୍ରଣାମ ଯେ ।
ସତ୍ୟମାତଃ ଶିଷ୍ଟ ଯେମନ ମୋ ବାନନ୍ଦ ସିଦ୍ଧହେଉ ମନସ୍କାମ ଯେ ।୨୬।
ଚନ୍ଦ୍ରଭାଗା ସଭାଗୃହେ ପ୍ରବେଶ; ମାତ୍ରେ ନିସ୍ତବ୍ଧ ହୋଇଲ ଦଶଦିଶ ।
ନିର୍ଦେବ ବଦନ୍ତୁ ବାକ୍ୟ ନ ସ୍ଫୁରେ;
ସଭାସ୍ଥିତ ଜନ ସେହି ପ୍ରକାରେ ଯେ ।
ଜାଗ୍ରତ ଭକ୍ତି ଉଦୟ ଯେ ।
ପ୍ରେମ ପୁଲକିତ ବାକ୍ୟ ନ ସ୍ଫୁରିତ; ଅଚ୍ଛାଦିଲା ମାତୃସ୍ନେହ ଯେ ।୨୭।
ଯେସନ ଯୁବକ ସୁତାଗ୍ରେମାତ; ବିବିଧାଲଙ୍କାରେ ହୋଇଲେ ମଣ୍ଡିତ ।
ଲଜ୍ଜାରେ ବଦନ ସୁତେ ପୋତନ୍ତି;
ତେସନ ହୋଇଲ ସଭା ପରସ୍ଥିତ ଯେ ।
ଯେହ୍ନେ ଗୁରୁ ପାଶେ ଶିଷ୍ୟ ଯେ ।
ଭକ୍ତି ପ୍ରଦର୍ଶାଇ; ଦାସ ପ୍ରାୟ ହୋଇ ନ କରନ୍ତି ପରିହାସ ଯେ ।୨୮।
ଯହିଁ ଚନ୍ଦ୍ରଭାଗା କରନ୍ତି ପଣ; ମାୟା ଗ୍ରାସି ନାହିଁ ମାଏ ତପନ ।
ମାର; ଯଞ୍ଚଣରେ ହୋଇ ବିଭ୍ରମ; ତପନ ହରାଇ ନିଜଜ୍ଞାନ ଯେ ।
ଗୁରୁ ଗୌରବ ନ ବାରି ଯେ ।
ମନେ ଭାବ ସ୍ମର; ଧରି ବାଳା କର;
ବଳରେ ନେବ ଓଟାରି ଯେ ।୨୯।
ପୁଣି ଭାବିଲେ ମୋହଠାରୁ ଶ୍ରେଷ୍ଠ; ପର ଜଣାଯାଏ ତେଜେ ବଳିଷ୍ଠ ।
ତେଣେ କାମାନଳେ ଦଗ୍ଧ ଶରୀର;
ଚନ୍ଦ୍ରଭାଗା ଦର୍ଶେ ଶୀତଳ ନୀର ଯେ ।
ବାମା ଲଭିବା ଆଶାରେ ଯେ ।
ଅସନ ଉପେକ୍ଷି ଗୁରୁ ଚନ୍ଦ୍ରମୁଖୀ ପାଶେ ଉଦ୍ୟତ ସତ୍ୱରେ ଯେ ।୩୦।

'କାମବିହ୍ୱଳା ବାତୁଳଙ୍କୁ ଦେଖି, ଚନ୍ଦ୍ରଭାଗା ସଦ୍ୟ ଗୃହ ଉପରେ
ଦେଖି ସମ୍ମୁଖିତ ବଗୁଦ୍ଧଗଣେ;
ସ୍ୱଚ୍ଛଜଳରେ ମୁଁ କରନ୍ତୁ ବରଣ ହେ ।
ତେଣୁ ନାମ ସ୍ୱୟମ୍ବର ହେ
ଧିକ ଧିକ ସୁର ପାପି ଦୁରାଚାର, ନୋହେ ଏ ସ୍ଥଳ ସମର ହେ ।୩୧।

ଶୁଣ ତପନ ତୁ ମୂଢ ପାମର, କାହିଁ ଦେଖିନାହୁଁ କି ସ୍ୱୟମ୍ବର
ବାମନ ହୋଇ ଧରୁଛୁ ଚନ୍ଦ୍ରମା;
ନିମିଷକେ ଭାଙ୍ଗିଦେବ ଗାରିମା ହେ ।
ଦେଖୁଥିବେ ସର୍ବଜନ ହେ ।
ପଶୁବଳ ଯିବ, ଯୁଗେ ଯୁଗେ ଥିବ,
ମୋ ନାମରେ ଏହି ସ୍ଥାନ ହେ ।୩୨।

ତପନ ହୋଇ କୋପେ ପ୍ରଜ୍ୱଳିତ, ରଖି ତବ ନୀତିଗତ ପାଣ୍ଡିତ୍ୟ
ତେଣୁ ନାମ ବହିଅଛ ଅବଳା;
ଯେଣୁ ବଳାତ୍କାରେ ହରଣୀ କଲି ହେ ।
ନିଶ୍ଚୟ ତାହାର ଦାସୀ ସେ ।
ପଣ୍ଡିତ ପ୍ରମାଦେ ବୃଥା ମନମଧ୍ୟେ, ହେଉଅଛ ପ୍ରଣୟୀ ହେ ।୩୩।

ଚନ୍ଦ୍ରଭାଗା ବୋଲେ ଶୁଣ ତପନ, ହୃଷ୍ଟହେଲି ଶୁଣି ତବ ବଚନ ।
ଦୀପଜାଳି ଯଦି ଅନ୍ଧ ସମ୍ମୁଖେ;
ଦୃଶ୍ୟ ସେ ହୋଇବ ତାକୁ ଅଲେକ ହେ ।
ଶୂକରେ ମିଷ୍ଟାନ୍ନ ଭୋଜ୍ୟ ସେ ।
ଦେଲେ ତାର ସ୍ୱାଦ କବା ତା ଅମୋଦ,
ମାରିବ କି କେବେ ମର୍କ ହେ ।୩୪।

ପାଷାଣ୍ଡ ନିକଟେ ନିଗମ ତତ୍ତ୍ୱ, ବଖାଣେ କି ଜାଣେ ତାର ମହତ୍ତ୍ୱ ।
ଅମା ରଜନୀରେ ଜ୍ୟୋତିରିଙ୍ଗଣି
ଦେଖିବାକୁ ଅଳ୍ପ ନୁହେଁ ସୁଧାଂଶୁ ସମ ଯେ ।
ଅଳ୍ପବିଦ୍ୟା ଭୟଙ୍କର ଯେ ।
ବଡ଼ିମା ଦେଖାନ୍ତି, ନିଜେ ନଷ୍ଟ ଯାନ୍ତି, ସମାଜରୁ ହୁଅନ୍ତି ଦୂର ଯେ ।୩୫।

ସିଂହ ନିକଟରେ ଶଶା କ୍ଷମତା, ବିସ୍ତାର ଯେ ଶୁଣେ ବୋଲେ ଅଯଥା ।
ମୋ ସମ୍ମୁଖେ ଦେଖାଅ ଯେ ତବ ତେଜ
ଦେଖ ପରାକ୍ରମ ମୋହର ଅଜ ଯେ ।
ଭସ୍ମ କରିଦେଇଥାନ୍ତି ଯେ
ସଭାସଦ ଜନେ ହେବ ଅସମ୍ମାନ, ଜନେ ରହିବେ ଅଖାଡ଼ ଯେ ।୩୬।

ସାକ୍ଷୀ ରହିଥାଅ ନୀଳ ଆକାଶ, ସୁବିଧେ ରହି ଦେଖନ୍ତୁ ଦିଗଦେଶ ।
ବସୁନ୍ଧରା ଦେଖି ନୋହି ଜଗତ,
ତ୍ରିଭୁବନ ଜନ ଏ ସମ୍ମାନିତ ଯେ ।
ପାପୀ କବଳରୁ ମୁହିଁ ଯେ ।
ମୁକ୍ତ ହେବାପାଇଁ ଏହିସ୍ଥାନେ ରହି, ସବୁତପତ ଯିବଇଁ ଯେ ।୩୭।

ଭକ୍ତିଭରେ ବାଳୀ କୁଆଇଁ ମଥା, ମଜ୍ଜନେ ସାଗରେ କଳ୍ପକ ଲତା ।
ପ୍ରେମ ବିହ୍ୱଳେ ହୋଇ ଉଚ୍ଛୃଙ୍ଖଳ,
ଜନ୍ମତେ ଡାକିଲା ଯେହ୍ନେ ପାଗଳ ଯେ ।
ନାଥ ନାଥ ମୋତେ ନିଅ ଯେ ।
କରୁଣାବାରିଧି ନାମ ତୋ ପ୍ରସିଦ୍ଧି,
ଗର୍ଭେ ମୋତେ ସ୍ଥାନ ଦିଅ ଯେ ।୩୮।

ହେ ସାଗର ଅସ ପ୍ରେମ କଲ୍ଲୋଳେ
ହସ୍ତ ପ୍ରସାରଣ ନାଅ ତୋ କୋଳେ ।
ଯୁଗେ ଯୁଗେ ଥାଉ୍ ତବ କୀରତ
ବହୁଜନ ମୁଖେ ରହୁ ଏ ଖ୍ୟାତ ଯେ ।
ଏହୁ ସ୍ଥାନ ହେଉ ତୀର୍ଥ ଯେ
ଆଜି ଦିବସରେ ଏଥେ ସ୍ନାନ କଲେ,
ପାତକୀ ହେବେ ପବିତ୍ର ଯେ ।୩୯।

ଭକ୍ତ ଡାକଶୁଣି ଯେସନେ ଶ୍ରୀଧର, ନକ୍ର ନାଶି ଗଜ କଲେ ଉଦ୍ଧାର
ସେସନେ ପାରିବାର ହୋଇଣ ତୁଷ୍ଟ,
ଲଘୁ ଫେଡଲେ ଚନ୍ଦ୍ରଭାଗା କଷ୍ଟ ଯେ ।
ଭୀମ ଗର୍ଜନ ଶବଦ ଯେ ।
ସଭାଜନେ ଶୁଣି ଅନ୍ୟୋଅନ୍ୟେ ଭଣି,
ଭୟେ ହୋଇଲେ ନିସ୍ତବ୍ଧ ଯେ ।୪୦।

ଶିଖରୀ ପରାଏ ତରଙ୍ଗ ମାଳ, କ୍ଷଣେ ଉଠିଲା ସାଗର ଜଳ ।
ଗର୍ଜନ ଜୁଆର ଆସିଲା ମାଡ଼ି;
ନବିନ ଆଷାଢ଼େ ଯେସନେ ଘଡ଼ଘଡ଼ି ଯେ
ସମ୍ମୁଖେ ସଭାସଦ୍ ଜନ ଯେ ।
ପ୍ରବେଶ ହୁଅନ୍ତେ, ସର୍ବେ ଦେଖୁ ଦେଖୁ,
ଚନ୍ଦ୍ରଭାଗା ଅନ୍ତର୍ଦ୍ଧାନ ଯେ ।୪୧।

ଯେସନେ ଧୂଳି ଖେଳୁଥାନ୍ତି ଶିଶୁଏ
କର ପ୍ରସାରି ମାତା କୋଳେ ନିଏ ।
ଯେସନେ ଚୁମ୍ବକ ଲୌହ ଧାତୁକୁ;
ସୁଦୂରୁ ଓଟାରି ନିଏ କୋଳକୁ ଯେ

ପ୍ରାଣାନ୍ତେ ଯେସନେ ଜୀବାତ୍ମା ଯେ ।
ଘଟ ଗ୍ଭଡ଼ଲାକୁ ଏ ମାଟି ପିଣ୍ଡକୁ, ଛାଡ଼ିଲେ ମିଶେ ପରମାତ୍ମା ଯେ ।୪୨।

ତେସନେ ପାରାବାର ଊର୍ମିମାଳା, କରି ପ୍ରସାର ଚନ୍ଦ୍ରଭାଗା ନେଲା ।
ସଭାଜନ ସବେ ନୀରବେ ଥାନ୍ତି;
ମାୟା ଯତଙ୍କର ତୁଟିଲା ଭ୍ରାନ୍ତି ଯେ ।
ସଭାଜନେ ପରିଚୟ ଯେ !
ଦେଇଣ ବୃତ୍ତାନ୍ତ, କହିଲେ ସମସ୍ତ ବ୍ରୀଡ଼ା ପାଇ ଅର୍କ ଥୟ ଯେ ।୪୩।

ଅଦ୍ୟଠୁ ବୋଇଲେ ସେ ମାୟାଯତି, ଯଶ ରହୁ ଚନ୍ଦ୍ରଭାଗା କୀରତି
ବ୍ରୀଡ଼ା ପାଇ ଅଛ ଯହିଁ ଏ ସ୍ଥାନେ;
ଅର୍କ ତୀର୍ଥ ହେଉ ଏ ତବ ନାମେ ଯେ ।
ମକର ଶୁକ୍ଳ ସପ୍ତମୀ ଯେ ।
ଚନ୍ଦ୍ରଭାଗାଠାରେ ତବ ଦର୍ଶନରେ, ସ୍ନାନ ସାରଣ ଯେ, ନମି ଯେ ।୪୪।

ଅହଂଭାବ ଆଦି ପଞ୍ଚ ପାତକ, ତେଜିଣ ହୋଇବେ ସେ ନିଷ୍କଳଙ୍କ
ଯଶ କୀରତି ଥାଉ ଯୁଗେ ଯୁଗେ;
ଦେବର୍ଷି ନାରଦ ଚଳିଲେ ସ୍ୱର୍ଗେ ଯେ ।
ସମ୍ଭାଷିତ ସର୍ବ ଜନ ଯେ ।
ଏକୁ ଅନେକରେ, ସମ୍ଭାଷଣ ପରେ, ଚଳିଲେ ନିଜ ସଦନ ଯେ ।୪୫।

କପିଳେଶ୍ୱରଙ୍କ ସାନ୍ନିଂଶ ଧାମ, ସୁକିନ୍ଦାର ବାରିଗଡିଆ ଗ୍ରାମ ।
ତହିଁ ବିପ୍ରକୁଳର ଅବତଂଶ ।
ପଦଲେଖିବାକୁ କଲେ ସାହସ ଯେ ।
ଧନେଶ୍ୱରଙ୍କ ନନ୍ଦନ ଯେ ।
କୀର୍ତ୍ତନ ବିହାରୀ ଅଚ୍ୟୁତଙ୍କୁ, ବନ୍ଦୁ ପାଦପଦ୍ମେ ଦିଅ ସ୍ଥାନ ଯେ ।୪୬।

ବିବୁଦ୍ଧଜନେ ଦୋଷ ନ ଧରିବ, ତାଙ୍କର ପଦ୍ମଯୁଗେ କ୍ଷମା ଦେବ ଯେ
ପ୍ରଥମରେ ଏ ମୋ କାବ୍ୟଟି ଲେଖା
କରେ ମୁଁ ଜ୍ଞାନୀଜନେ କୃପାଭିକ୍ଷା ଯେ ।
ଚନ୍ଦ୍ରଭାଗା ସ୍ୱୟମ୍ବର ଶେଷ ।
ପ୍ରକୃତ ବର୍ଣ୍ଣନା କବିର କଳ୍ପନା, ଭାବଭୁବନେ ଦେ କର ସ୍ଥିର ଯେ ।୪୭।

---

## ଓଁ ଶ୍ରୀ ଶ୍ରୀ ଗଣେଶାୟ ନମଃ

# କୋଣାର୍କ ମହିମା

(ରାଗ—ରାମକେରୀ)

ଚନ୍ଦ୍ରଭାଗା ତୀର୍ଥ ଅନ୍ତରେ କୋଣାରକ ମହିମା,
ବଳିଛି ମାନସ ବର୍ଣ୍ଣିବି ସ୍ଥାନ ଗୁଣ ଗାରିମା । ୧ ।
ସ୍ୱୟମ୍ବର ସଭା ସଦନ ଅର୍କତୀର୍ଥ ତା' ନାମ,
ଯହିଁ କ୍ରୀଡ଼ା ପାଇ ଭାସ୍କର ହୋଇଥିଲେ ମଗନ । ୨ ।
କ୍ରମେ କେତେ କେତେ ବରଷ ବିତିବାକୁ ଲାଗିଲା,
ନାକ ଲୋକ ରାଜସଭାରେ ଦିନେ ମନ୍ତ୍ରଣା ହେଲା । ୩ ।
ମର୍ତ୍ତ୍ୟେ ଗଲେ ଅମ୍ଭେ ବୃନ୍ଦାର୍କେ ଥିବେ ସ୍ୱଦେହ ଘେନି;
ରଖିବା କୀରତି ଭାରତେ ଏକ ଶାଳ ନିର୍ମାଣି । ୪ ।
ସୁମନାସ ଅଂଶ ଘେନିଣ ଅଚଳକୁ ଚଳନ୍ତୁ,
ବାରଣ ଗନ୍ଧର୍ବ ଅଚଳେ ଜନ୍ମଲାଭ କରନ୍ତୁ । ୫ ।
ବିଶ୍ୱକର୍ମା କଣେ ଜନ୍ମିଣ ରଚିବେ ସେ ମନ୍ଦିର,
ଅନୁପମା ହେବ ମହୀରେ ନ ରଚିବେ କେ ନର । ୬ ।

ସ୍ୱପ୍ନବାଣି ହେଲା ଉତ୍କଳ ରାଜା ନରସିଂହରେ,
ଅଥଳ ଦରିଆ ପାର୍ଶ୍ୱରେ ଅର୍କତୀର୍ଥ ଅଦୂରେ । ୭ ।

ସତ୍ୱେ ନିର୍ମାଣିବ ମନ୍ଦିର ଅର୍କ ମୂର୍ତ୍ତି ସ୍ଥାପିବ,
ଯେସନେ ଅଦିତ୍ୟ ଉଦୟେ ମୂର୍ତ୍ତି ଝଲସୁଥିବ । ୮ ।

ବଳ ବିକ୍ରମଶାଳୀ ହୋଇବୁ ରାଜା ଉତ୍କଳ ମଧ୍ୟେ,
ବୀର ଯୋଦ୍ଧା ମଧ୍ୟେ ବଳିଷ୍ଠ, ନ ଜିଣିବେ କେ ବାଦେ । ୯ ।

ସ୍ୱପ୍ନ ଜାଗି ତେଜି ଶୟନ, ରାଜା ଯୋଗ୍ୟ ଉଠପନ୍ତି,
ଶିବ ସାମନ୍ତରି ପାଇକ, ପାଶେ ବିଶ୍ୱାସେ ଡାକି । ୧୦ ।

ସ୍ୱପ୍ନ ବାଣି ସବୁ ବଖାଣି, ରାଜା ଗଡ଼ରକ୍ଷୀରେ,
ଗଜ, ଅଶ୍ୱ, ସୈନ୍ୟ, ସଜାଅ, ଯିବା ଅର୍କ ତୀର୍ଥରେ । ୧୧ ।

ରାଜାଙ୍କ ପାଇ ସାମନ୍ତରି, ତ୍ୱରି ଛମୁଁ ଚଳିଲେ,
ସୈନ୍ୟାଧ୍ୟକ୍ଷ ପାଶେ ପାଇକ ପତ୍ର ଲେଖି ପେଷିଲେ । ୧୨ ।

ପତ୍ର ଲଭି ସୈନ୍ୟ ଅଧ୍ୟକ୍ଷ, ଗଜ, ଅଶ୍ୱ, ସଜାଏ,
ରାଉତ ମାହୁନ୍ତ ରାଇଣି, ବୀରବାଦ୍ୟ ବଜାଏ । ୧୩ ।

ଶ୍ୱେତ ଗଜ ପରେ ହାଉଦା, ରାଜା ତହିଁ ବିଜୟ,
ବାଦ୍ୟକାର ଆଠ ସଇନ, ଖରେ ଚଳିଲେ ସହ । ୧୪ ।

ଅଗ୍ରେ ବିଜୟଘୋଷ ଦାଉଣ୍ଡି, ବାଜେ ବୀର କାହାଳି,
ଆଠ ସୈନ୍ୟ ବାଦ୍ୟ ନିନାଦେ, ମହୀ ପଡ଼େ ଉଛୁଳି । ୧୫ ।

ପୁରଜନ ମନେ ଭାବନ୍ତି, କାହୁଁ ଅଇଲା ଅରି,
ଧନ, ଜନ ଲୁଟି ନେବ କି ? ଦେବ ମହତ ସାରି । ୧୬ ।

ଡରେ ପୁର ତେଜି ଅରଣ୍ୟେ, ସର୍ବେ ଯାଇ ଲୁଚିଲେ,
ନିଜ ରାଜା ବାର୍ତ୍ତା ପାଇଣି, ଗୃହେ ଫେରି ଅଇଲେ । ୧୭ ।

ଅର୍କତୀର୍ଥ ପାଶେ ମିଳିଲେ, ଯାଇ ରଜାର ଥାଟ,
ଅଶ୍ୱ, ଗଜ, ସ୍ୱର୍ଣ୍ଣ, ଜହର, ଦ୍ୱାରେ କଲେକ ଭେଟ । ୧୮ ।
ତୀର୍ଥେ ସ୍ନାନସାରି ରାଜନ, ବେଗେ କଲେ ମନ୍ତ୍ରଣାହିଁ,
ଥାଟ ସୈନ୍ୟ ସହି ପାଇକେ, ଜଗି ରହିଲେ ତହିଁ । ୧୯ ।
ଶିବ ସାମନ୍ତରା ରାଇଣି, ଚଳିଗଲେ ରାଜନ,
ମନ୍ଦିର ନିର୍ମାଣ କରିବେ, କଲେ ନିର୍ଣ୍ଣୟ ସ୍ଥାନ । ୨୦ ।
ଫେରି ଥାଟ ସୈନ୍ୟ ସହିତ, ପୁରକୁ ଆଗମନ,
ବଳ ବୀର୍ଯ୍ୟ ଐଶ୍ୱର୍ଯ୍ୟାଦିରେ, କମେ ହେଲେ ମଗନ । ୨୧ ।
ଦିନ ପରେ ଦିନ ବିତିଲା, ହେଲା ମାସ ମକର,
ଶୁଭ ଦେବା ମନେ ପଡ଼ିଲା, ରଜା କଲେ ବିଚାର । ୨୨ ।
ସାମନ୍ତରା ରାଇ ରାଜନ, କଲେ ସବୁ ବର୍ଣ୍ଣନ,
ଶୁଭ ଦିଅହେବ ମନ୍ଦିର, ଶୁକ୍ଳ ସପ୍ତମୀ ଦିନ । ୨୩ ।
କାର୍ଯ୍ୟଦକ୍ଷ ଶିଳ୍ପକାରଙ୍କୁ ଖୋଜ ଆମ୍ଭ ରାଜ୍ୟରେ,
ଅଣାଅ ସମ୍ଭଣେ ମୋହର, ମୁହିଁ ଦେଖିଇ ବାରେ । ୨୪ ।
ଡ଼ଗରେ ଫେଷିଣ ହକାରେ, ସାମନ୍ତରା ପାଇକ,
ବାରଶତ ଶିଳ୍ପୀ ଅଇଲେ, ହୋଇଣି ଡ଼ାକହାକ । ୨୫ ।
ରାଜ ସିଂହଦ୍ୱାରେ ପ୍ରବେଶି, କଲେ ରାଜ ଦର୍ଶନ,
ବୋଇଲେ ଉତ୍ତର କାହିଁକି, ଅଛି କି କାର୍ଯ୍ୟ ପୁଣ । ୨୬ ।
ରାଜା ବୋଲେ ଶୁକ୍ଳ ସପ୍ତମୀ, ଚନ୍ଦ୍ରଭାଗା ଅଦୂରେ,
ଶୁଭ ଦିଅହେବ ଦେଉଳ, ସର୍ବେ ଚଳିବ ଖରେ । ୨୭ ।
ତହିଁ ନିରୂପିତ ସମୟେ, ସର୍ବେ ହେଲେ ପ୍ରବେଶ,
ରାଜନ ଚଳିଲେ ସମ୍ଭର୍ବେ, ଘେନିଣ ଥାଟ ଅଶ୍ୱ । ୨୮ ।
ବିଧିବିଧାନରେ ପୁରୋଧା, କଲେ ବସୁଧା ପୂଜା,
ମୁଣ୍ଡେ ଘେନି ଏକ ପ୍ରସ୍ତର, କଲେ ନିକ୍ଷେପି ରଜା । ୨୯ ।

ବିଶୁ ମହାରଣା ଅଛଇ, ଶ୍ରେଷ୍ଠ ଶିଳ୍ପୀ ମଧ୍ୟରେ,
ରାଜା ରାଇ ତାଙ୍କୁ ପାଶକୁ, ପାଠ ବାନ୍ଧିଲେ ଶିରେ । ୩୦ ।
ଶୁଣ ଏ ଦେଉଳ ବର୍ଣ୍ଣନା, ଯାହା ବର୍ଣ୍ଣିବି ମୁହିଁ,
ତହିଁ କିଛି ଊଣା ହୋଇଲେ, ତୁହି ହୋଇବୁ ଦାୟୀ । ୩୧ ।
ଦେଉଳ ଉଚ୍ଚତା ହୋଇବ, ଦୁଇଶତ ହସ୍ତ
ଫୁଟ, ମୁଖଶାଳା ଉଚ୍ଚତା, ଏକଶତ ପଚିଶ । ୩୨ ।
ସପ୍ତଦଶ ଫୁଟ ଉପରେ, ଏକଚକ୍ର ରଥରେ,
ଯୋକ୍ତ ହୋଇଥିବେ ସପତ ବାଜି, ସାରଥି ପରେ । ୩୩ ।
ବିବିଧ ପ୍ରକାରେ ଚର୍ଚ୍ଚିତ, ତରୁ, ଲତା ପୁଷ୍ପରେ,
ରଙ୍ଗରେ ପ୍ରସ୍ତୁତ ନ ହୋଇ ହୋଇଥିବ ପ୍ରସ୍ତରେ । ୩୪ ।
ଗର୍ଭ ମୁଦ ରତ୍ନ ମୁଦର, ମଧ୍ୟେ ଅର୍କ ପ୍ରତିମା,
ସ୍ଥାପନା ହୋଇବ ଶୂନ୍ୟରେ ବିକଶିବ ମହିମା । ୩୫ ।
ତ୍ରିଲକ୍ଷ କୋଟି ରୌପ୍ୟ ମୁଦ୍ରା, ତହିଁ ବ୍ୟୟ ହୋଇବ,
ହୀନାଙ୍ଗ ହୋଇଲେ ଦେଉଳ, ସର୍ବେ ଫାଶି ପାଇବ । ୩୬ ।
ଶିବ ସାମନ୍ତରାୟ ସହିତ, ବାରଶତ ବଢ଼େଇ,
ବିଜାଜ୍ଞା ଲଭିଣ ଫେରିଲେ, ଗୃହେ ମଜନ ହୋଇ । ୩୭ ।
କିପରି ଦେଉଳ ନିର୍ମିବେ, ଭାବି ଭାବି ମନକୁ,
ସଜବାଜ ହୋଇ ଚଳିଲେ, ସର୍ବେ ତୀର୍ଥ ସ୍ଥଳକୁ । ୩୮ ।
ଚିଲିକା ହ୍ରଦରୁ ପ୍ରସ୍ତର, ଛେଦକାର କାଟିଲେ,
ଦଳ ଦଳ ହୋଇ ତରେଇ, ତଗ୍ରିଦ୍ୱାର ବୋହିଲେ । ୩୯ ।
ସହ୍ର ସହ୍ର କୁଲି ମୂଲିଆ, ତହିଁ ହୋଇଲେ ପୋଷି,
ଷୋଳ ବର୍ଷ କାର୍ଯ୍ୟ ଲାଗିଲା, କି ବର୍ଣ୍ଣିବି ବିଶେଷି । ୪୦ ।
ପ୍ରସ୍ତର ଖଣ୍ଡିକ ଦୀର୍ଘରେ, ଅଠେଠ ଚଉଦ ଫୁଟ,
ପ୍ରସ୍ଥରେ ପ୍ରସ୍ତର ଅଛଇ, ଛଅରୁ ସାତ ଫୁଟ । ୪୧ ।

ବହଳ ଅଟଇ ପଞ୍ଚମ, ପୃଷ୍ଠ ମଧ୍ୟେ ବିସ୍ତାର,
ଆଶ୍ଚର୍ଯ୍ୟ ଭାବରେ ଦେଉଳେ, ଲାଗିଅଛି ପ୍ରସ୍ତର । ୪୨ ।
କେତେ ଦେବାଦେବୀ ବିସ୍ମିତ, ଭାବେ ଅଛି ନିର୍ମିତ,
କାରୁକାର୍ଯ୍ୟ ଦୃଶ୍ୟ ପ୍ରସ୍ତରେ, ଦେଖି ଜନେ ବିସ୍ମିତ । ୪୩ ।
ବିଶ୍ୱେ ନାହିଁ ଏହେନ ଦେଉଳ, ପ୍ରସ୍ତରରେ ରଚିତ,
ସର୍ବବିଶ୍ୱବାସୀ ଦର୍ଶନେ, କରନ୍ତି ପ୍ରଶଂସିତ । ୪୪ ।
ଚୂନ ବାଲି କିମ୍ବା ସିମେଣ୍ଟେ, ନ ହୋଇଣି ଯୋଡ଼େଇ,
ପଲସ୍ତରା ନୋହୁ ପ୍ରସ୍ତର, ବିଶ୍ୱମଧ୍ୟେ ରାଜଇ । ୪୫ ।
ଧନ୍ୟ ଯେଉଁ ଶିଳ୍ପୀ ଗଢ଼ିଛି, ଯାର ବିଶ୍ୱେ ବିଖ୍ୟାତ,
ନାହିଁ ବା ନ ଥିଲା ନୋହିବ, ତଥିସହ ମିଶ୍ରିତ । ୪୬ ।
ଷୋଡ଼ଶ ବରଷ ବିତବ, ନ ସରିଲା ଦେଉଳ,
ଶିଳ୍ପୀମାନ ମନ ମଧ୍ୟରେ, ଚିନ୍ତାକୁଳେ ବ୍ୟାକୁଳ । ୪୭ ।

—୦—

ରାଗ—ଶଙ୍କରାଭରଣ

ଅପୂର୍ଣ୍ଣ ଅଛି ଦେଉଳ ଜନେ ମୁଖରିତ ।
ଦାରୁଣ ବଢ଼େଇ ସର୍ବେ ହେଲେ ଏକତ୍ରିତ ।
ଏକୁ ଏକ ଭାବି ମନେ ।
କପର ଦେଉଳ ମୁଣ୍ଡି ମାରିବ ଯତନେ । ୧ ।
କେସନେ ସ୍ଥାପନା ମୂର୍ତ୍ତି ରହିବ ଶୂନ୍ୟରେ ।
ଶିଳ୍ପୀଶ୍ରେଷ୍ଠ ବିଶୁ ମହାରଣା ଭାବେ ଧୀରେ ।
କାରେ ନ ଦିଶଇ ବୁଦ୍ଧି ।
ମୂର୍ତ୍ତି ସ୍ଥାପନା ନୋହିଲେ ନୋହେ କାର୍ଯ୍ୟସିଦ୍ଧି । ୨ ।

ଫାଶିକାଠେ ଝୁଲି ହେବେ ବାରଣ ବଢ଼େଇ ।
ବିଶ୍ୱମହାରଣା ହୃଦେ ପରମେଶ ଧାୟୀ ।
        ରହେ ନିର୍ବିକ୍ଷଣ ଦ୍ୱାର ।
ବିଭୁ ଧାୟୀ ସମ୍ପାଦନ ରହେ ନିରାଧାର । ୩ ।
ଶିଳ୍ପୀମାନଙ୍କର ଚିନ୍ତା କେ କହିବ ପାର ।
ବିଷଣ୍ଣ ବଦନ ସର୍ବେ ଚିନ୍ତାରାଶି ଧାର ।
        ବିଭୁପାଦେ କରି ଲୟ ।
ଏ ବନ୍ଧନୁ ମୁକ୍ତିଦିଅ ଅହେ ଦୟାମୟ । ୪ ।
ଷୋଡ଼ଷ ବରଷ ଛେଡ଼ିଅଛୁ ଘରଦ୍ୱାର
ନୟନେ ନାଚୁଅଛନ୍ତି ଆମ୍ଭ ପରିବାର ।
        ରାଜାଦେଶେ ସର୍ବେ ଡ଼ର
ଲଭେବମାଫି କେ କୁଅଡେ ଯାଇ ତ ନ ପାର । ୫ ।
ଦେଉଳ ମୂର୍ତ୍ତି ନୋହିଲା ହେବୁ ପ୍ରାଣେ ନାଶ ।
ଏ ଆପଦୁଁ ସାହକର ଅହେ ଜଗଦୀଶ ।
        ବାରେ ଶୁଣିଲୁ ଗୁହାରି ।
ଦୀନଜନେ ରକ୍ଷାକର ଦିନ ଅର୍ଦ୍ଧହାରି । ୬ ।
ଚକ୍ରପେଷି ନକ୍ର ନାଶି ରଖିଛ ଗଜକୁ ।
ବ୍ୟାଧ, ଦାବାନଳୁ ରକ୍ଷାକଲ ହରିଣୀକୁ ।
        କୁବ୍‌ଜା କରିଛ ସୁନ୍ଦରୀ ।
ପୃଥ୍ୱୀଭାର ଭସ୍ମାସିଲ ଦନୁଜ ନିବାରି । ୭ ।
ସତ୍ତୁଁ ଶୋକାକୁଳ ହେଲେ ବାରଣ ବଢେଇ
ଦୟାବନ୍ଧୁ ଭବଗ୍ରାହୀ ବିଶ୍ୱକର୍ମା ରାଇ ।
        ଆଜ୍ଞାଦେଲେ ମର୍ତ୍ତ୍ୟପୁର
କ୍ଷିପ୍ରେ ଚଳ ଅର୍କ ମୂର୍ତ୍ତି ସ୍ଥାପିବ ମନ୍ଦର । ୮ ।

ସପ୍ତଦିନ ଶେଷେ ରାତେ ଶିଳ୍ପୀଶ୍ରେଷ୍ଠ ବିଶୁ ।
ଦେଖିଲେ ସ୍ୱପନ ଶୁଣ ତୁମ୍ଭର ଭିତରୁ ।
ଜାତ ହୋଇଥିବ ହେତୁ ।
କେ ଜଣେ ଖ୍ୟାତିଲା ମୂର୍ତ୍ତି ସ୍ଥାପିବ ଯେ ସେତୁ । ୯ ।
ବିଶ୍ୱକର୍ମା ଅଂଶ ରହିଅଛି ତାହାଠାରେ ।
ମୂର୍ତ୍ତି ସ୍ଥାପନା କରିବ ସେହି ଦେଉଳରେ ।
ଏହା ନ କହିବୁ କାହିଁ ।
ସ୍ୱପ୍ନ ଦେଖି ଶିଳ୍ପୀ ଶ୍ରେଷ୍ଠ ଉଠିଲେ ଚିଆଁଇ । ୧୦ ।
କା'ରେ କିଛି ନ ବୋଲିଣ ରହିଲେ ନୀରବେ ।
ବାଇଶତ ଶିଳ୍ପୀଙ୍କର ଚିନ୍ତିତ ସରବେ ।
କିଛିକାଳ ଗଲା ବହି ।
ଆତ୍ମପ୍ରାଣ ନାଶିବାକୁ ଲାଗିଅଛି ବହି । ୧୧ ।
ଏକାଳେ ଏକ ଯୁବକ ପ୍ରବେଶିଲା ତହିଁ,
ନାମ ଅଟଇ ଧରମା ପରିଚୟ ଦେଇ,
ବିଶୁ ନାମ ଅଟେ ପିତା
ଦେଖି ନାହିଁ ଗର୍ଭେଥିଲି ବୋଲୁଥିଲେ ମାତା । ୧୨ ।
ଷୋଡ଼ଶ ବରଷ ହେଲା ଅସିଛନ୍ତି ଏଠାଥ,
ବାର୍ତ୍ତା ନ ପାଇଣି ମାତା ପେଷିଛନ୍ତି ମୋତେ,
ଚିହ୍ନା ପାଇ ଶିଳ୍ପୀଶ୍ରେଷ୍ଠ
ପ୍ରେମ ଅଲିଙ୍ଗନେ କୋଳ କରେ ଧରି ଓଷ୍ଠ । ୧୩ ।
ବିଭା ବରଷକେ ଛାଡ଼ି ଅଇଲି ମୁଁ ଘର,
କୁଶଳେ ଅଛନ୍ତି ଟିକି ଜନନୀ ତୋହର ।
କହ କୁଶଳ ବାରତା,
ଶୁଣି ଧରମା ବୋଲଇ ଭଲେ'ଛନ୍ତି ମାତା । ୧୪ ।

କି ନିମନ୍ତେ ଏତେକାଳ ଏଥେ ଅଛ ରହି,
ବାରେକ ପ୍ରତ୍ୟାବର୍ତ୍ତନ ନ କଲ କପାଇଁ ।
କିବା ହୋଇଅଛି ମନା,
ଶୁଣି ସମସ୍ତ ବଖାଣେ ବିଶୁ ମହାରଣା । ୧୫ ।
ମକର ଶୁକ୍ଳ ସପ୍ତମୀ ହେଉଅଛି କାଲି,
ଅର୍କ ସ୍ଥାପନା ନୋହିଲେ ସର୍ବେ ହେବୁ ବଳି ।
ହେବ ଦେଉଳ ପ୍ରତିଷ୍ଠା,
ରାଜାଙ୍କ ନୋହିବ ଆନ ହୋଇଅଛି ନିଷ୍ଠା । ୧୬ ।
ସମସ୍ତେ ବର୍ଦ୍ଧି ରହିଛୁ ଆଜକ କେବଳ,
କାଲି ପ୍ରଭାତରେ ରାଜା ପୂରିଇବ କାଳ ।
ବଞ୍ଚିବାକୁ ନାହିଁ ଆଶା,
ଜଗଦ୍ଧୀଶେ କରିଅଛୁ ସକଳେ ଭରଷା । ୧୭ ।
ଧରମା ବୋଲଇ ତାତ ଦେଖିବା ଦେଉଳ,
ମୂର୍ତ୍ତି ସ୍ଥାପନା ନୋହୁଛି କି ଅଛି କୌଶଳ ।
ମୂର୍ତ୍ତି ରହିଛନ୍ତି କାହିଁ,
ଅଣାକୁ ପରୀକ୍ଷା କରି ଦେଖିବି ମୁଁ ତହିଁ । ୧୮ ।
ବାଣି ଶୁଣି କେହି ଶିଳ୍ପୀ ଅଣିଲି ମୂରତି,
ବାରଣ ବଢ଼େଇ ତହିଁ ମିଳିଲେ ଝଟତି ।
ଧର୍ମୀ ଅର୍କ ମୂର୍ତ୍ତି ଘେନି,
ଦେଉଳ ଚୂଳେ ଉଠିଲି ସ୍ମରି ପଦ୍ମଯୋନି । ୧୯ ।
ନିରୀକ୍ଷଣି କରେ ଚତୁର୍ଦ୍ଦିଗକୁ ଅନାଇଁ,
ତାତ କିବା ବିଶ୍ୱକର୍ମା ସ୍ୱର୍ଗୁ ଅଇଲିଇଁ ।
ତେତେହେଁ ତେଜ ଦିଶୁଅଛି,
ଯେଣୁ ଦୈବବଳେ ବଳୀୟାନ ହୋଇଅଛି । ୨୦ ।

କିଛି କ୍ଷଣ ରହି ଚିତ୍ତ ଆଇଲା ଉତ୍ତର,
ଶିଳ୍ପୀକାରେ ପ୍ରବୋଧଇ ସେ ସାନ୍ତ୍ୱନା କରି ।
ବୋଲେ ଚିନ୍ତା ତେଜ ମନ୍ତ୍ର,
ସର୍ବେ ମିଳଣ ସ୍ଥାପିବା ପ୍ରତ୍ୟୁଷରେ ଯାନ୍ତୁ । ୨୧ ।
ମୁଁ ଯାହା ଦେଖିଲି ତହିଁ କିଛି କଷ୍ଟ ନାହିଁ,
ବୃଥା ଭାବନା କାହିଁକି ବାରଣ' କରେଇ ।
ସର୍ବେ ଚଳ ଯେଝା ବାସେ,
ହରଷ ବଦନେ ସର୍ବେ ଚଳିଲେ ନିବାସେ । ୨୨ ।



( ରାଗ—ଘଣ୍ଟାରବ )

ଶିଳ୍ପୀ ଶ୍ରେଷ୍ଠ ପିତା ପୁଏ ଯେ, ଚଳିଲେ ହୋଇ ଏକତ୍ର,
ପହଞ୍ଚି ଶାଳରେ ଭାବନ୍ତି ସକଳରେ ଷୋଡ଼ଶ ବର୍ଷ ବୃତ୍ତାନ୍ତ । ୧ ।
ଦ୍ୱିତୀୟା ଯାମିନୀ ସନ୍ଧି ଯେ, ପ୍ରବେଶ ହୁଅନ୍ତେ କହି,
ଭୋଜନ ଶୟନ କଲେକ ବହନ ସମୟ ବିତିଲା ବହୁ । ୨ ।
ଶୟନ ଶଯ୍ୟାରେ ପିତା ଯେ, ନିଦ୍ରାରେ ହେଲେ ଅଚେତା,
ଯୋଡ଼ି ବେନିପାଣି, ପିତା ପାଦେ ନମି, ଧର୍ମୀ ମନେ କଲା ଚିନ୍ତା । ୩ ।
ବାସରୁ ବାହାର ହେଲା ଯେ, ଦେଉଳ ପାଶେ ମିଳିଲା,
ସୁମରଣି ପିତା, ସ୍ମରିଲା ବିଧାତା, ଦେଉଳ ଚୂଳେ ଉଠିଲା । ୪ ।
ଧର୍ମୀ ମନେ କଲା ଧ୍ୟାନ ଯେ, କୁଳେ ନୋହୁ ଅପମାନ,
ଏସନ ସମୟେ ମୂରତ୍ତି ସ୍ଥାପିବି ସର୍ବେ ଥିବ ଅଚେତନ । ୫ ।
ସର୍ବେ ଯଦି ଜାଣିଥାନ୍ତେ ଯେ, ପିତୃ ପରାଣ ନାଶନ୍ତେ,
ଅନ୍ୟହସ୍ତେ ନିଜ ପ୍ରାଣନାଶ ଗଲେ କାହିଁ କି ବୋଲି ବୋଲନ୍ତେ ଯେ ॥

ନବଗ୍ରହ ଦିଗପାଳ ଯେ, ସାକ୍ଷୀ ରହନ୍ତୁ ସକଳ,
ଅହେ ବିଶ୍ୱକର୍ମା ଶିଳ୍ପୀକୁଳ ଧନ୍ୟ, ଦିଅନ୍ତୁ ସାହସ ବଳ । ୭ ।
ସ୍ଥାପିବି ମୁଁ ଅର୍କ ମୂର୍ତ୍ତି ଯେ, ଯୁଗେ ଯୁଗେ ଥିବ କୀର୍ତ୍ତି,
ମମ ବଂଶୋଦ୍ଭବ, ଶିଳ୍ପୀକୁଳ ସର୍ବ, ବ୍ରୀଡ଼ା ନ ଲଭନ୍ତୁ ଏଥି । ୮ ।
ବିଶ୍ୱକର୍ମା ଦେଲେ ଶକ୍ତି ଯେ, ଲୋମ ପୁଲକ ଉଠନ୍ତି,
ପ୍ରେମ ଗଦଗଦେ, ଚିନ୍ତି ହୃଦମଧ୍ୟେ, ନମି ଭାସ୍କରେ ବିନତି । ୯ ।
ନମସ୍କାର ପ୍ରିୟଭାନୁ ଯେ, ସଂଶୟ ଛେଦିଲେ ମନ୍ତ୍ର,
ପ୍ରାଚୀ ଦିଗନ୍ତେ, ଉଦୟ ଗରବେ, ଦର୍ଶନେ ଭକତ ସ୍ତୁତ । ୧୦ ।
ଧର୍ମା, ନଦକୁ ନିରେଖି ଯେ, ପୁଣି ମୂରତି ନିରେଖି,
ପାର୍ଶ୍ୱେ ଏକ ଏକ ବୃହତ୍ତ ଚୁମ୍ବକ ରତ୍ନ ସ୍ତମ୍ଭେ ଦେଲା ଯୋଖି । ୧୧ ।
ଲୌହ ନିର୍ମିତ ଭାସ୍କର ଯେ, ଧରିକରେ ନମସ୍କାର,
ତତକ୍ଷଣେ ଚୁମ୍ବକ ଓଷ୍ଠାରେ ଯୁବକ, ସହ ନିର୍ମିତ ଭାସ୍କର । ୧୨ ।
ବେନି ଚୁମ୍ବକ ମଧ୍ୟରେ ଯେ, ପ୍ରତିମା ରହେ ଶୂନ୍ୟରେ,
ପ୍ରାଣବାୟୁ ଗଲା, ଜ୍ୟୋତିରେ ମିଶିଲା ଧର୍ମା ପଡ଼ିଲା ମହୀରେ । ୧୩ ।
ହୋଇଥିଲା କୋଣାରକ ଯେ, ପ୍ରତ୍ୟକ୍ଷେ ଦର୍ଶନେ ଅର୍କ,
ବ୍ରାହ୍ମ ମୁହୂର୍ତ୍ତରେ ନଦେ ନିରେଖିଲେ ଦର୍ଶନ ସୂର ପ୍ରତ୍ୟକ୍ଷ । ୧୪ ।
ନାହିଁ ଆଜ ସେହି ଦୃଶ୍ୟ ଯେ, ରହିଛି ଭଗ୍ନାବଶେଷ,
ବିଦେଶି ବଣିକ ନେଇଣ ଚୁମ୍ବକ କେଡ଼େ କୀର୍ତ୍ତିକ ଧ୍ୱଂସ । ୧୫ ।
ବୀର ଓଡ଼ିଆର କଟକ ଯେ, ଦେଖ ପୁରୀ କୋଣାରକ,
ନୂଆ ରାଜଧାନୀ ଭୁବନେଶ୍ୱରରେ ଲିଙ୍ଗ ମନ୍ଦିରକୁ ଦେଖ । ୧୬ ।
ଏ'ଜାତି ବଳ ସାହସ ଯେ, ଖ୍ୟାତି ଲଭିଅଛି ବିଶ୍ୱ,
ଏ ଦେଶ ନନ୍ଦନ ବିପ୍ର ଶ୍ରୀ କୀର୍ତ୍ତନ, ମହିମା ବର୍ଣ୍ଣିଛି ଲେଶ । ୧୭ ।

—o—

ମୁଦ୍ରାକର ଶ୍ରୀ ରାମଚନ୍ଦ୍ର କର, ସାରସ୍ୱତ ପ୍ରେସ, କଟକ—୧୯୭୭

# ପ୍ରଣେତାଙ୍କର ଆଉ କେତୋଟି ଯୁଗୋପଯୋଗୀ ଉପାଦେୟ ପୁସ୍ତକ

| | | |
|---|---|---|
| ୧ । | ଚୈତନ ଚଉତିଶା | ଟ ୦-୨୫ |
| ୨ । | ଷଡ଼ରଙ୍କ ଭଜନ | ଟ ୦-୨୫ |
| ୩ । | ସ୍ୱାଧୀନଭାରତ | ଟ ୦-୨୦ |
| ୪ । | କଳିଶେଷ ଚଉତିଶା | ଟ ୦-୨୦ |
| ୫ । | ସୁକନ୍ଦା ଉତ୍କଳ ଯୋଜନା | ଟ ୦-୩୦ |
| ୬ । | ଚନ୍ଦ୍ରଭାଗା ସ୍ୱୟମ୍ବର କାବ୍ୟ | ଟ ୧-୨୫ |
| ୭ । | ତ୍ୟାଗଯୋଗ | ଟ ୦-୭୫ |
| ୮ । | ଯୁଗଧର୍ମ ଗୀତା | ଟ ୪-୨୫ |
| ୯ । | ଶିକ୍ଷିତମାନଙ୍କ ଶିକ୍ଷା ଉପନ୍ୟାସ | (ଯନ୍ତ୍ରସ୍ଥ) |

—ପ୍ରାପ୍ତିସ୍ଥାନ—

**ଆଧ୍ୟାତ୍ମିକ ପଣ୍ଡିତ କବି ଶ୍ରୀ କୀର୍ତ୍ତନବିହାରୀ ଆଚାର୍ଯ୍ୟ**

ଗ୍ରାଃ ପୋଃ ଅଃ ବାରିଗଡ଼ିଆ,

ଜିଃ କଟକ